# ମାଛର ହସ


ଲେଖିକା :

ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତି



ପ୍ରକାଶକ :

ଶ୍ରୀ ରାଧାଶ୍ୟାମ ମହାନ୍ତି

ସାଥୀ ମହଲ

ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :

୧୯୮୧

ମୁଦ୍ରଣ :

ଶ୍ରୀରାମ ପ୍ରିଣ୍ଟର୍ସ, ଓଡ଼ିଆ ବଜାର, କଟକ-୧

ମୂଲ୍ୟ : ଟ ୫-୦୦



Digitized by srujanika@gmail.com

# ସୂଚୀ

ବିଷୟ ପୃଷ୍ଠା





Digitized by srujanika@gmail.com

# ବୁଦ୍ଧିଆ ଦରଜୀ



ଅନେକ ଦିନ ଆଗର କଥା । ଖରାଦିନିଆ ସକାଳ, କଅଁଳିଆ ଖରା ଚଢ଼ିଥାଏ । ଦରଜୀ ପିଲାଟିଏ ତା ଖୋଲା ଝରକା ପାଖରେ ବସି ଜୋତା ସିଲେଇ କରୁଥିଲା । ଦରଜୀଟି ମିଠା ଜିନିଷ ଖାଇବାକୁ ଭାରି ଭଲ ପାଏ । ଏହି ସମୟରେ ବୁଢ଼ୀଟିଏ ଗୋଟିଏ ଟୋକେଇରେ ମହୁ ବିକିବାକୁ ଆସି ଡାକିଲା, "ମହୁ ନେବ ମହୁ, ଭାରି ମିଠା ମହୁ ।" ତା ଡାକ ଶୁଣି ମିଠା ଖିଆ ଦରଜୀ ପାଟିରୁ ତ ନାଳ ବହିବାକୁ ଲାଗିଲା । ସେ ମହୁବାଲୀ ବୁଢ଼ୀକୁ ଡାକି ତା ମୁଣ୍ଡରୁ ମହୁ ଟୋକେଇ ଓହ୍ଲାଇ ନିଜ ପିଣ୍ଡା ଉପରେ ରଖିଲା । ତା'ପରେ ମହୁ କିଣିବ ବୋଲି ମହୁ ଟୋକେଇର ସବୁ ବୋତଲକୁ ଘଣ୍ଟାଏ ପର୍ଯ୍ୟନ୍ତ ଏଥିରୁ ଟିକେ ସେଥିରୁ ଟିକେ କରି ଶୁଙ୍ଘିବାକୁ ଲାଗିଲା । ବୁଢ଼ୀ ତା ଢଙ୍ଗ ଢାଙ୍ଗ ଦେଖି ଭାବିଲା, "ଜଣେ ଭଲ ଗରାଖ ମିଳିଛି । ଆଜି ତ ମୋର ଗୁଡ଼ାଏ ମହୁ ବୋତଲ ବିକ୍ରୀ ହେବ ।" କିନ୍ତୁ ଦରଜୀ ଟୋକା

Digitized by srujanika@gmail.com

ବୋତଲରୁ ଟିକିଏ ଟିକିଏ ଗୁଣ୍ଡିସାରି ଠିକ୍ କଲା ଯେ ସେ ମୋଟେ ଗୋଟିଏ ବୋତଲ ମହୁ କିଣିବ । ବୁଢ଼ୀ ବଡ଼ ବିରକ୍ତ ହୋଇ ଆଜି ଅଯଥା ସମୟ ନଷ୍ଟ ନ କରି ଦରଜୀକୁ ଗୋଟିଏ ବୋତଲ ମହୁ ଦେଇ ତରତର ହୋଇ ଚାଲିଗଲା ।

ଦରଜୀ ଟୋକା ଭାବିଲା କେମିତି ସେ ବୋତଲର ମହୁ ଖାଇବ । ସେ ବୋତଲକୁ ଚାହୁଁ ଚାହୁଁ ତା ପାଟିରୁ ପାଣି ବୋହି ପଡ଼ୁଥାଏ । ସେ ଖଣ୍ଡେ ପିଠା ନେଇ ତା ଉପରେ ମହୁତକ ବୋହଳିଆ କରି ଢାଳିଲା, ଭାବିଲା "ଆଃ, କି ସୁନ୍ଦର ଦିଶୁଛି !" ଶେଷରେ ସେ ଠିକ୍ କଲା ଯେ ତିଆରି କରୁଥିବା କୋଟ୍‌ଟି ସିଲେଇ କରିସାରି ପିଠାଟି ଖାଇବ । ଏଇଆ ଭାବି ପିଠାକୁ ଚଉକି ଉପରେ ରଖିଦେଇ ସେ ସିଲେଇରେ ମନ ଦେଲା ।

ଘର ଭିତରେ ବହୁତ ମାଛି ଉଡ଼ୁଥିଲେ । ଦେଖୁ ଦେଖୁ ମହୁ ବାସ୍ନା ପାଇ ସବୁ ଆସି ପିଠା ଉପରେ ବସିଲେ । ଦରଜୀ ମାଛିଙ୍କୁ ଦେଖି ବିରକ୍ତ ହୋଇ ସେମାନଙ୍କୁ ଘଉଡ଼ାଇ ଦେଲା; କିନ୍ତୁ ମାଛି-ଗୁଡ଼ା ଥରକୁଥର ଆସି ବସିଲେ । ତେଣୁ ସେ ତା ସିଲେଇ କନାରୁ ଖଣ୍ଡେ ନେଇ ମାଛିଙ୍କୁ ଉଡ଼ାଇବାକୁ ଲାଗିଲା । ସେ କନା ବାଜି ସାତଟା ମାଛି ମରି ତଳେ ପଡ଼ିଲେ । ମଲା ମାଛିଙ୍କୁ ଦେଖି ଦରଜୀ ଭାବିଲା, "ଏଁ ମୁଁ କେଡ଼େ ସାହାସୀ ! ଏକା ଥରକେ ସାତଟା ମାଛି ମାରିଦେଲି ! ଏତେ ବଡ଼ କଥାଟା ଲୁଚାଇ ନ ରଖି ସହର ସାରା ଜଣାଇବା ଦରକାର

ଏଇଆ ଭାବି ସେ ତରବରରେ ଖଣ୍ଡେ ବଡ଼ କନା କାଟି ତା ଦେହରେ ବଡ଼ ବଡ଼ ଅକ୍ଷରରେ ଲେଖିଲା "ଏକା ଥରକେ ସାତ ।" ତା ପରେ ସେ ଭାବିଲା, "ଖାଲି ସହର ସାରା ଲୋକ ଏ କଥା

Digitized by srujanika@gmail.com

ଜାଣିଲେ ତ ହେବନ,  ଏତେ ବଡ଼ କଥାଟା ଦୁନିଆ ସାରା ଲୋକେ ଜାଣିବା ଦରକାର ।” ସେ ମନେ ମନେ ଭାରି ଖୁସି ହୋଇଗଲା ।

ଯେଉଁ କନାରେ ସେ ଲେଖିଥିଲା "ଏକା ଥରକେ ସାତ" ତାକୁ ଗୁଣ୍ଡ ଉପରେ ବାନ୍ଧି, ଦୋକାନ ବନ୍ଦ କରି, ତା ଶୀର ପଣିଆ ଦେଖାଇବାକୁ ବାହାରି ପଡ଼ିଲା । ଗଲାବେଳେ ତା ପାଖରେ ଥିବା ଖଣ୍ଡେ ଛେନା ସେ ସାଙ୍ଗରେ ନେଇଗଲା । ଯାଉ ଯାଉ ବାଟରେ ଦେଖିଲା ଗୋଟେ ଠିକ ଚଢ଼େଇ ଗଛ କଣ୍ଟାରେ ଲାଗି ଯାଇଛି । ସେ ସେଇଠିକୁ ଆଣି ଆସ୍ତେ କରି ତା ପକେଟ ଭିତରେ ପୂରାଇ ଦେଇ ଚାଲିବାକୁ ଲାଗିଲା ।

ଏମିତି ଚାଲି ଚାଲି ସେ ଆସି ଗୋଟାଏ ପର୍ବତ ପାଖରେ ପହଞ୍ଚିଲା । ପର୍ବତ ଉପରେ ଚଢ଼ି ଚଢ଼ି ସେ ଦେଖିଲା, ଗୋଟାଏ ଅସୁର ଗୋଡ଼ ଲମ୍ବାଇ ବସିଛି । ଅସୁର ଦରଜୀକୁ ଦେଖି ବଡ଼ ଖୁସି ହୋଇ ଅନେଇଲା । ତା ଦେଖି ଦରଜୀ ଟୋକା ସିଧା ଅସୁର ପାଖକୁ ଯାଇ କହିଲା, "ନମସ୍କାର । ତୁ ଏଁନା ପର୍ବତ ଉପରେ ବସି ସବୁ ଆଡ଼ର ସୁନ୍ଦର ଦୃଶ୍ୟ ଦେଖୁଛୁ, ମୁଁ କିନ୍ତୁ ମୋ ଭାଗ୍ୟ ପରୀକ୍ଷା କରିବାକୁ ବାହାରିଛି । ତୁ ମୋ ସାଙ୍ଗରେ ଆସିବୁକି ?"

ଅସୁର ତାକୁ ଥଟ୍ଟା କରି କହିଲା "ହଇରେ ଟୋକା, ତୁ ତ ଏଡ଼େ ଟିକିଟେ, ତୁ ମୋ କାମକୁ କାମେ ହେବୁନି । ମୁଁ ପୁଣି ତୋ ସାଙ୍ଗରେ ଯିବି । ତୋର ତ ବଡ଼ ସାହସ ! ମୋତେ ଡାକୁଛୁ ; ତୁ କାହା ସଙ୍ଗେ କଥା କହୁଛୁ, ଜାଣିଛୁ କି ?"

ସାଙ୍ଗେ ସାଙ୍ଗେ ଦରଜୀ ଟୋକା କହିଲା,"ହଉ ହଉ ବନ୍ଦକର । ଏତେ ଶୀଘ୍ର ଶୀଘ୍ର ତୋ କଥାଗୁଡ଼ା ଭାଙ୍ଗ ପକାନା । ଦେଖ୍ ମୋ

Digitized by srujanika@gmail.com

ପୁଡରେ କଣ ଲେଖା ହୋଇଛି । ତୁ ଯଦି ପଢ଼ି ଜାଣିଛୁ ପଢ଼ି ଦେଖ୍, ମୁଁ କି ଭଲିଆ ମଣିଷ । ମୁଁ ଯେମିତି ସେମିତି ଲୋକ ନୁହେଁ ।

ସତକୁ ସତ ଅସୁର ପଢ଼ିଲା "ଏକା ଥରକେ ସାତ ।" ସେ ଭାରି ଆଶ୍ଚର୍ଯ୍ୟ ହୋଇଗଲା । ଭାବିଲା "ଏକା ଥରକେ ସାତଟା ଅସୁରଙ୍କୁ ମାରିଛି ! ବଡ଼ ଆଚମ୍ବିତ କଥା । ଇଏ ନିଶ୍ଚେ ଜଣେ ବଡ଼ ସାହସୀ ଓ ବଳୁଆ ମଣିଷ ହୋଇଥିବ ।" ତେଣୁ ସେ ଦରଜୀକୁ ଟିକେ ବେଶୀ ଖାତିର କରି କହିଲା "ଆଚ୍ଛା, ତୋତେ ମୁଁ ପରୀକ୍ଷା କରିବି ।" ଏଇଆ କହି ସେ କଣ କଲା ନା, ଗୋଟାଏ ବଡ଼ ପଥର ଧରି ତାକୁ ଦୁଇ ହାତରେ ଚିପୁଡ଼ି ଦେଲାରୁ ପଥରରୁ ଟୋପା ଟୋପା ହୋଇ ପାଣି ବୋହିଗଲା । ଅସୁର ଦରଜୀକୁ କହିଲା, ତୁ ଏମିତି କରି ପାରିବୁ ? ଦରଜୀ ଟୋକା ତ ମହା ଚାଲାକ୍ । ସେ କହିଲା "ଏଥିରେ କିଛି ବେଶୀ ବାହାଦୁରୀ ନାହିଁ । ଇଏ ତ ମୋ ପାଇଁ ଖେଳ ।" ସେଇଠୁ ସେ ତା ପକେଟରୁ ଛେନା ଖଣ୍ଡିକ କାଢ଼ି ତାକୁ ଦୁଇ ହାତରେ ଧରି ଏତେ ଜୋର୍‌ରେ ଚାପି ଦେଲା ଯେ ସେଥିରୁ ପାଣି ଝର୍ ଝର୍ ହୋଇ ଝରି ପଡ଼ିଲା ।

ଅସୁର ତ କାବା । ଏଥର ସେ ଗୋଟାଏ ଟେକା ଉପରକୁ ମାରିଲା । ଟେକାଟା କାହିଁ କେତେ ଉପରକୁ ଆକାଶକୁ ଉଠିଗଲା । ଦରଜୀ ଟୋକା ତାହା ଦେଖି କହିଲା, "ଓଃ ଇଏ କିଛି ନୁହେଁ । ତୋ ଟେକା ଯେତେ ଉପରକୁ ଗଲେ ବି ମାଟିରେ ପଡ଼ିବ । ମୁଁ ଏମିତି ଟେକା ଫିଙ୍ଗିବି ଯେ ସେ ଆକାଶକୁ ଚାଲିଯିବ, ମାଟିରେ ପଡ଼ିବନି ।" ଏଥର ସେ ତା ପକେଟ୍‌ରେ ରଖିଥିବା ଚଢ଼େଇଟାକୁ କାଢ଼ି, ତାର ଯେତେ ଜୋର୍ ଅଛି, ସେତେ ଜୋର୍ ଲଗାଇ ଆକାଶକୁ ଛୁଟିଦେଲା । ଚଢ଼େଇଟା ତଳେ ନ ପଡ଼ି ମନ ଖୁସିରେ

Digitized by srujanika@gmail.com

ଆକାଶକୁ ଉଠି ଉଡ଼ି ଚାଲିଗଲା । ଅସୁର ଏଥର ଆଉ ଟିକେ ଦବିଗଲା । ତା ଆଖି ଖୋସି ହୋଇଗଲା । ସେ କହିଲା, "ଆଚ୍ଛା ଆଚ୍ଛା, ତୁ ଭଲ ଫିଙ୍ଗି ପାରୁଛୁ କିନ୍ତୁ ତୁ ସିନା ଭଲ ଫିଙ୍ଗି ମାରୁଛୁ, ହେଲେ ତୁ ମୋ ପରି ସେମିତି ବଡ଼ ବଡ଼ ଜିନିଷ ଟେକି ପାରୁଛୁ କି ନାହିଁ ଦେଖିବା ।" ସେ କହିଲା, "ତୁ ଯଦି ପ୍ରକୃତରେ ବଳୁଆ ହୋଇଥିବୁ, ଆସିଲୁ ମୋ ସାଙ୍ଗରେ ଏଇ ବଡ଼ ଗଛଟାକୁ ଟେକି ପର୍ବତ ଉପରୁ ତଳକୁ ନେଇ ଯିବୁ ।"

ଦରଜୀ ଟୋକା ତ ଭାରି ବୁଦ୍ଧିଆ । ସେ କହିଲା, "ଠିକ୍ ଅଛି । ତୁ ଗଛର ମୂଳ ପାଖ ଟେକ, ସେ ପାଖଟା ସରୁ, ମୁଁ ଗଛର ଝଙ୍କାଳିଆ ଆଗପଟଟା ଟେକିବି । ଆଗପାଖଟା ବେଶୀ ଭାରି, ଡାଳ ପତ୍ର ସବୁ ରହିଛି ।"

ବୋକା ଅସୁର ସେ କଥାରେ ରାଜି ହୋଇଗଲା । ତେଣୁ ସେ ଗଛର ଆଗ ପାଖ ଟେକି ଆଗେ ଆଗେ ଚାଲିଲା । ଦରଜୀ ଟୋକା ମଜା ଆନନ୍ଦରେ ପଛ ଅଗରେ ଗୋଟାଏ ଝଙ୍କାଳିଆ ଡାଳ ବାଛି ତା ଉପରେ ବସି ଖୁସିରେ ଗୀତ ଗାଇବାରେ ଲାଗିଥାଏ । ଅସୁର ବିଚରା ଗଛ ସହିତ ଦରଜୀ ଟୋକାକୁ ବି ବୋହି କରି ନେଲା । କିଛି ବାଟ ଯିବା ପରେ ଅସୁର କହିଲା, "ମୁଁ ଆଉ ଟିକେ ବି ଆଗକୁ ଯାଇ ପାରିବି ନାହିଁ । ଏ କଥା କହି ସେ ଗଛକୁ ତଳକୁ ପକାଇ ଦେଲା । ଦରଜୀ ଟୋକା ଆସ୍ତେ କରି ଗଛ ଡାଳରୁ ଓହ୍ଲାଇ ତଳକୁ ଆସି ଅସୁରକୁ କହିଲା, "ଯା ଯା, ଭୁଠା କରୁଛୁ ନୁହଁ, ମୁଁ ତୋ ଠାରୁ ଢେର ବଳୁଆ ବୋଲି ତ ଏବେ ପ୍ରମାଣିତ ହୋଇଗଲା । ତୁ ତ ଏଇ ସାମାନ୍ୟ ଗଛଟାକୁ ଟେକି ପାରୁ ନାହୁଁ ।"

Digitized by srujanika@gmail.com

ଅସୁର ଏ କଥା ଶୁଣି ମନେ ମନେ ଭାରି ରାଗିଗଲା । ସେ କହିଲା, "ହଉ, ତୁ ତ ଏତେ ବଢୁଆ, ତୁ ଆଜି ଆ ମୋ ଘରେ ରାତିଏ କଟେଇ ସକାଳୁ ତୋ ବାଟରେ ଯିବୁ । ସେଇଠୁ ଦୁହେଁ ସାଙ୍ଗ ହୋଇ ଅସୁର ଘରକୁ ଗଲେ । ସେଠି ଆହୁରି ଦୁଇଟା ଢଗଟ ଅସୁର ନିଆଁ ପାଖରେ ବସି ଦୁଇଟା ମେଣ୍ଢା ନିଆଁରେ ସେକି ଖାଇବାରେ ଲାଗିଥାନ୍ତି । ଦରଜୀ ଓ ଅସୁର ଦୁହେଁ ଯାଇ ସେଠାରେ ବସିଲେ । ଅସୁର ତା ଖାଇବା ଖାଇଲା । ଦରଜୀର ଖାଇବାକୁ କିଛି ନଥାଏ, ସେ ଖାଲି ସେମାନଙ୍କୁ ଦେଖୁଥାଏ । ତା'ପରେ ସେମାନେ ଖାଇବା ଶେଷ କରି ଶୋଇବାକୁ ଗଲେ । ଅସୁର ଦରଜୀକୁ ଗୋଟାଏ ଢଗଟ ବଡ଼ ଖଟ ଦେଲା ଶୋଇବାକୁ । କିନ୍ତୁ ତାକୁ ସେ ଖଟ ଉପରେ ଶୋଇବାକୁ କାଠିଧ । ସେ ଖଟରୁ ଓହ୍ଲାଇ ଘରର ଗୋଟାଏ କଣରେ ଯାଇ ଶୋଇ ପଡ଼ିଲା ।

ଅସୁରକୁ ନିଦ ନଥାଏ । ଯେମିତି ସମସ୍ତେ ଶୋଇଲେ ସେ ଦରଜୀ ଖଟ ପାଖକୁ ଆସି ଏମିତି ଗୋଟାଏ ବାଧା ମାରିଲା ଯେ, ଖଟଟା ଦୁଇଖଣ୍ଡ ହୋଇଗଲା । ସେ ଭାବିଲା, "ଯା ହେଉ ଦରଜୀ ଟୋକା ଏଥର ଶେଷ ହୋଇଛି ।" କିନ୍ତୁ ସେ କାହୁଁ ଜାଣିବ ଯେ ତା ଉପରେ ସେ ଟୋକା ମୋଟେ ନାହିଁ ବୋଲି ।

ସକାଳ ହେଲା । ଅସୁରମାନେ ଉଠି ବଣକୁ ଯିବାକୁ ବାହାରିଲେ । ଦରଜୀ କଥା ମୋଟେ ଭାବିଲେ ବି ନାହିଁ । ତେଣୁ ସେମାନେ ଯେତେବେଳେ ଦେଖିଲେ ସେ ବି ତାଙ୍କ ସହିତ ବାହାରିଛି, ସେମାନେ ଭାବିଲେ ସେ ବୋଧେ ଆଉଥରେ ଜୀବନ ପାଇଲା । ସେ ଯେ ଏକାଥରକେ ସାତଟା ମାରିପାରେ, ଏକଥା

Digitized by srujanika@gmail.com

ମନେ ମକାଇ ଯେମାନେ ପ୍ରାଣ ଭୟରେ ଦୌଡ଼ି ପଳାଇବାକୁ ଲାଗିଲେ ।

ତା ପରେ ଦରଜୀ ଟୋକା ବୁଲି ବୁଲି ଜଣେ ରାଜାଙ୍କ ରାଜ ନଅରରେ ପହଞ୍ଚିଲା । ନରମ ଘାସର ପଡ଼ିଆ ଦେଖି ସେ ସେଠାରେ ଶୋଇ ପଡ଼ିଲା । ଶୋଉ ଶୋଉ ନିଘୋଡ଼ ନିଦରେ ଶୋଇଗଲା । ସେ ରାଜ୍ୟର ଲୋକମାନେ ତା ଗୁନ୍ତିର ଲେଖା, 'ଏକା ଥରକେ ସାତ' ଦେଖି ଭାବିଲେ "ଏ ନିଶ୍ଚୟ ଜଣେ ବଡ଼ ଯୋଦ୍ଧା ହୋଇଥିବେ ।" ତେଣୁ ସେମାନେ ରାଜାଙ୍କୁ ଯାଇ ତା କଥା କହିଲେ । ରାଜା ସେ କଥା ଶୁଣି କହିଲେ "ଆଚ୍ଛା, ସେ ଉଠିଲେ ତାଙ୍କୁ ମୋ ନିକଟକୁ ଡାକି ଆଣ । ମୁଁ ତାଙ୍କୁ ମୋ ରାଜ୍ୟର ସେନାପତି କରିବି ।" ରାଜାଙ୍କ ଲୋକେ ଯାଇ ଦରଜୀକୁ ସେକଥା କହିଲେ । ସେ ତାହା ଶୁଣି ମହା ଗର୍ବରେ କହିଲା, "ମୁଁ ତ ସେଇଥିପାଇଁ ଆସିଛି । ରାଜା ଯଦି ମୋତେ ସେନାପତି କରିବେ, ମୁଁ ଭାରି ଖୁସି ହେବି ।"

ସେ ଯାଇ ରାଜାଙ୍କୁ ଦେଖାକଲା । ରାଜା ତାକୁ ଭଲ ଘର ଦେଲେ, ତାର ରହିବାର ସବୁ ସୁବିଧା କରିଦେଲେ । କିନ୍ତୁ ରାଜାଙ୍କ ଲୋକମାନଙ୍କୁ ଏ କଥା ମୋଟେ ଭଲ ଲାଗିଲା ନାହିଁ । ସେମାନେ ନୂଆ ସେନାପତିଙ୍କୁ ପରୀକ୍ଷା କରିବାକୁ ରାଜାଙ୍କୁ ଶିଖାଇଲେ । ରାଜା ବି ସେ କଥାରେ ରାଜି ହେଲେ ।

ତେଣୁ ସେ ଦରଜୀକୁ ଡାକି କହିଲେ "ଏଇ ପାଖ ବଣରେ ଦୁଇଟା ଅତି ଖରାପ ସ୍ୱଭାବର, ଦୁଷ୍ଟ ଅସୁର ଅଛନ୍ତି । ସେମାନେ ରାଜ୍ୟର ବହୁତ କ୍ଷତି କରୁଛନ୍ତି । ତୁମେ ଖୁବ୍ ସାହାସୀ ଓ ବଳୁଆ । ତୁମେ ଯଦି ସେ ଦୁଇଟାଯାକ ଅସୁରଙ୍କୁ ମାରି ପାରିବ ତା ହେଲେ

Digitized by srujanika@gmail.com

ମୁଁ ତୁମକୁ ମୋ ରାଜ୍ୟରୁ ଅଧେ ଓ ମୋ ଝିଅକୁ ତୁମ ସହିତ ବାହା ଦେବି । ତୁମେ ଇଚ୍ଛାକଲେ ତୁମ ସାଙ୍ଗରେ ତୁମକୁ ସାହାଯ୍ୟ କରିବାକୁ ଶହେ ସୈନ୍ୟ ନେଇପାର ।"

ଦରଜି ଏହା ଶୁଣି କହିଲା, "ଠିକ୍ ଅଛି । ମୋର କୌଣସି ସାହାଯ୍ୟ ଦରକାର ନାହିଁ । ମୁଁ ଏକା ଯାଇ ଅସୁରଙ୍କୁ ମାରି ପାରିବି ।" ତେବେ ସେ ଶହେ ସୈନ୍ୟଙ୍କୁ ନେଇ ବାହାରିଲା । ବଣ ପାଖରେ ପହଞ୍ଚି ସେ ସୈନ୍ୟମାନଙ୍କୁ ଅପେକ୍ଷା କରିବାକୁ କହି, ଏକା ବଣ ଭିତରକୁ ଗଲା । ସୈନ୍ୟମାନେ ଖୁସିରେ ତାଙ୍କୁ ସେଠାରେ ଅପେକ୍ଷା କଲେ ।

ବଣ ଭିତରକୁ ଯାଇ ଦରଜି ଦେଖିଲା ଅସୁର ଦୁଇଟା ଗୋଟାଏ ବଡ଼ ଗଛ ମୂଳରେ ଆରାମରେ ଶୋଇ ଘୁଂଘୁଡ଼ି ମାରୁଛନ୍ତି । ଦରଜି ଟୋକା ସଙ୍ଗେ ସଙ୍ଗେ ତା କାମରେ ଲାଗିଗଲା । ସେ ତା ପକେଟରେ ଗୁଡ଼ାଏ ବଡ଼ ବଡ଼ ଟେକା ପୂରାଇ ଅତି ସାବଧାନରେ ଗଛ ଉପରକୁ ଚଢ଼ିଗଲା । ଗୋଟାଏ ଝଙ୍କାଳିଆ ଡାଳ ଉପରେ ଲୁଚି କରି ବସି ଗୋଟାଏ ପରେ ଗୋଟାଏ ପକାଇବାକୁ ଲାଗିଲା । ଟେକା ସବୁ ଯାଇ ଅସୁର ମୁଣ୍ଡରେ ଢାଏ ଢାଏ ପଡ଼ୁଥାଏ । ଶେଷରେ ତାର ନିଦ ଭାଙ୍ଗିଲା । ସେ ଉଠି ଚାରି ଆଡ଼କୁ ଅନାଇଲା ଏବଂ କାହାକୁ ନ ଦେଖି ତା ପାଖ ଅସୁରକୁ ଠେଲି ଉଠାଇ କହିଲା, ତୁ କାହିଁକି ମୋ ଉପରକୁ ଟେକା ଫୋପାଡ଼ୁଛୁ ? ଦ୍ୱିତୀୟ ଅସୁରଟା ଆଶ୍ଚର୍ଯ୍ୟ ହୋଇ କହିଲା, "ତୁ ନିଶ୍ଚୟ ସ୍ୱପ୍ନ ଦେଖୁଛୁ । ମୁଁ ତ ମୋର ଶୋଇଛି, ତୋତେ ଛୁଇଁବି ନାହିଁ, ଆଉ ଟେକା କେତେବେଳେ ମାରିଲି ? ଶୋଇପଡ଼, ଅଯଥା ମୋ ନିଦ ଭାଙ୍ଗନା ।" ପୁଣି ଦୁହେଁ ନିଘୋଡ଼ ନିଦରେ ଶୋଇ ପଡ଼ିଲେ । ଏଥର

Digitized by srujanika@gmail.com

ଦରଜୀ ଗୋଟାଏ ବଡ଼ ପଥର ହିଞ୍ଚାପୁ ଅସୁର ମୁଣ୍ଡ ଉପରକୁ ପକାଇଲା । ଠେକା ମାଡ଼ରେ ତା ନଦ ଭାଙ୍ଗିଗଲା । ସେ ଉଠିପଡ଼ି ରାଗରେ ପ୍ରଥମ ଅସୁରକୁ କହିଲା, "କରେ, ତୁ କାହିଁକି ମୋତେ ମାରୁଛୁ ? ମୁଁ ତ କହିଲି, ମୁଁ ତୋତେ ମାରିନାହିଁ ବୋଲି ।" ପ୍ରଥମ ଅସୁର କହିଲା, "ମୁଁ ବି ତ ତୋତେ ମାରିନି ।" ତୁ କ'ଣ ମୋ ସାଙ୍ଗରେ ଛଳକ ଖେଳୁଛୁ ? ଏମିତି କୁହାକୁହି ହେଉ ହେଉ ଦୁହେଁ ଭୀଷଣ ରାଗିଗଲେ । ଅସୁର ବୁଦ୍ଧି ତ ! ଦୁହିଁଙ୍କ ଭିତରେ ଘମାଘୋଟ ଲଢ଼େଇ ଲାଗିଗଲା । ସେମାନେ ବଡ଼ ବଡ଼ ଗଛ ଉପାଡ଼ି ପରସ୍ପରକୁ ପିଟିବାକୁ ଲାଗିଲେ । ବଡ଼ ବଡ଼ ପଥରମାନ ଉଠାଇ ଉପରକୁ ପକାଇଲେ । ଯୁଦ୍ଧ ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ଲାଗି ରହିଲା । କେହି କାହାକୁ କମ୍ ନୁହନ୍ତି । ଶେଷରେ ଯୁଦ୍ଧ ଶେଷ ହେବା ବେଳକୁ ଦରଜୀ ଦେଖିଲା ଦୁଇ ଅସୁରଯାକ ମରି ଶୋଇଛନ୍ତି । ସେ ତ ଗଛ ଉପରେ ବସି ମଜାରେ ଲଢ଼େଇ ଦେଖୁଥିଲା ।

ଏଥର ଦରଜୀର ଆନନ୍ଦ ଦେଖେ କିଏ ? ସେ ମହାଖୁସିରେ, ଅତି ଗର୍ବର ସହିତ ଗଛରୁ ଓହ୍ଲାଇ ତା ଖଣ୍ଡାକୁ ଖୋଳରୁ କାଢ଼ି ଦୁଇ ଅସୁରଙ୍କୁ ଦୁଇ ଗଡ଼ କରି କାଟିଦେଲା । ତା ପରେ ସେ ପାଟି କରି ତା ସୈନ୍ୟମାନଙ୍କୁ ପାଖକୁ ଡାକି ଅସୁର ଦୁଇଟାଙ୍କୁ ମାରିଥିବାର ଦେଖାଇଲା । ସେ ସେମାନଙ୍କୁ କହିଲା, "ଦେଖ, ଅସୁର ଦୁଇଟା ଏତେ ରାଗିଯାଇଥିଲେ ଯେ ସେମାନେ କେତେ କେତେ ଗଛ ଉପାଡ଼ି ପକାଇଛନ୍ତି । କିନ୍ତୁ ଯେତେ ବଳୁଆ ହେଲେ ବି, ଯିଏ ଏକା ଥରକେ ସାତଟା ମାରିପାରେ, ତାର ସେମାନେ କ'ଣ କରିବେ ?" ଦରଜୀ ଠୋକା ଯେ କ'ଣ ସାତଟା ଏକା ଥରକେ ମାରିଛି ସେ କଥା କିଏ ବା କାହିଁକି ଜାଣିବ ? ସୈନ୍ୟମାନେ ବି ଦରଜୀ କେଉଁଠି କିଛି ଖଣ୍ଡିଆ ଖାବରା ହୋଇ ନ

Digitized by srujanika@gmail.com

ଥିବାର ଦେଖି ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ଭାବିଲେ "କେଡ଼େ ସାହାସୀ ଇଏ ! ରାଜକେମାଙ୍କ ପାଇଁ ଇଏ ଯୋଗ୍ୟ ।"

ତା'ପରେ ଦରଜୀ ରାଜାଙ୍କ ଆଗରେ ତାର ବୀରତ୍ୱ କାହାଣୀ କହିଲା ଓ ରାଜାଙ୍କୁ ତାଙ୍କ ପ୍ରତିଜ୍ଞା ପୂରଣ ପାଇଁ ଦାବୀ କଲା । ରାଜା ଶେଷରେ ବାଧ୍ୟ ହୋଇ ରାଜ୍ୟରୁ ଅଧେ ଓ ରାଜାଝିଅକୁ ତା ସହିତ ବିବାହ ଦେଲେ । ଦରଜୀ ନିଜ ବୁଦ୍ଧି ଓ ସାହାସ ବଳରେ ନିଜର ଭାଗ୍ୟ ବଦଳାଇ ରାଜା ହୋଇ ଆନନ୍ଦରେ ରହିଲା ।

ପିଲାଏ, ଦରଜୀ ଗପ ଶୁଣି ତମର ମନ ହେଉଥିବ, ତମେ ତା ପରି ହୋଇ ଯାଆନ୍ତ କି ! ନୁହେଁ ?



Digitized by srujanika@gmail.com



# ମନ ଦୁଃଖ

ଶୀତ ଦିନିଆ ଜହ୍ନରାତି । ଗୋଟିଏ କଳା ଘୋଡ଼ା ଉପରେ ବସି କଳା ଲୋକଟିଏ ରାତି ଅଧରେ ଛୁଟିଛି । କଳା ଲୋକଟି ସାଙ୍ଗରେ ସ୍ତ୍ରୀ ଲୋକଟିଏ ଓ ଗୋଟିଏ ଛୋଟିଆ, ସୁନ୍ଦରିଆ ପୁଅଟିଏ ମଧ୍ୟ ଘୋଡ଼ାରେ ବସି ଯାଉଛନ୍ତି । ସ୍ତ୍ରୀ ଲୋକଟି ଛୋଟ ପୁଅଟି ସମ୍ଭବତ ଏକ ନିର୍ଜନ ଦୁର୍ଗରେ ବାସ କରିବାକୁ ଯାଉଛନ୍ତି । କିନ୍ତୁ ଛୋଟ ପୁଅଟି ଏ ସବୁ କଥା କିଛି ଜାଣେ ନାହିଁ । ସ୍ତ୍ରୀଲୋକଟିକୁ ପୁଅଟିର ସବୁ ପ୍ରକାର ଭଲ ମନ୍ଦ ବୁଝିବାକୁ କୁହାହୋଇଥାଏ, ଯେପରିକି ସେ ନିର୍ଜନ ଦୁର୍ଗରେ ତା ମନରେ ଟିକେ ବି ଦୁଃଖ ହେବନି କି ତାର କିଛି ଅସୁବିଧା ହେବ ନାହିଁ ।

ଛୋଟ ପୁଅଟିର ଆଖି ନିଦରେ ଢୁଳ ଢୁଳ । ବହୁତ ବାଟ ଆସି ଆସି ସେ ବଡ଼ ହାଲିଆ ହୋଇ ପଡ଼ିଥାଏ । ହେଲେ ବି ତା ଟିକି ମୁହଁରେ ନିଦୁଆ ହସଟିଏ ଲାଗି ରହିଛି । କଳା ଲୋକଟି ପୁଅଟିର ସରଳିଆ ମୁହଁକୁ ଅତି ସ୍ନେହରେ ଚୁମ୍ବିଲା । ପିଲାଟି ତାର

Digitized by srujanika@gmail.com

ଛୋଟ ଛୋଟ ଲଡ଼ଲଡ଼ିଆ ଗୋଡ଼ରେ ବଡ ଦପ୍ସମପ୍ସ ଦେଖା ଯାଉ ଥାଏ। ସେ ତାର ଗୋଡ ପାଇଁ ଠିଆ ହେବାକୁ ବା ଦୌଡ଼ି ଦୌଡ଼ି କରି ଖେଳିପାରୁ ନ ଥାଏ।

ଏଇ ଠିକ ପିଲାଟି ଜଣେ ରାଜକୁମାର। କିନ୍ତୁ ଭାଗ୍ୟର ବିଧାନ, ରାଜା ତାକୁ ରାଜପ୍ରାସାଦରୁ ନିର୍ଜନ ଦୁର୍ଗରେ ରହିବା ପାଇଁ ପଠାଇଛନ୍ତି। ଯେମିତିକି ସେ ବାହାରର ଅନ୍ୟ ଲୋକଙ୍କ ସହିତ ମିଶି ନ ପାରିବ। ଯେଉଁ କଳା ଲୋକଟି ତାକୁ ନେଇ କରି ଆସିଛି ସେ ଖାଲି କଳା ନୁହେଁ, ସେ କାଲ ଓ ବୋବା। ତେଣୁ ସେ ପିଲାଟି ସହିତ କିଛି କଥା କହିପାରିବ ନାହିଁ।

ସେମାନେ ଦୁର୍ଗ ପାଖରେ ଆସି ପହଞ୍ଚିଲେ। ଜହ୍ନ ଆଲୁଅରେ ଦେଖିଲେ ଦୁର୍ଗ ଉପରୁ ଗୋଟାଏ ଲମ୍ବା ଲୁହା ଚେନ୍ କାନ୍ଥର ଅଧା ପର୍ଯ୍ୟନ୍ତ ଲମ୍ବିଛି। କଳା, କାଲ ଲୋକଟି ସେ ଚେନ୍ ପର୍ଯ୍ୟନ୍ତ ଯିବାକୁ ଗୋଟାଏ ସିଡ଼ି କାଢ଼ି କାନ୍ଥରେ ଡେରିଲା। ତା ପରେ ସେ ଦୁର୍ଗ ଉପରକୁ ଚେନ ଧରି ଚଢିଗଲା, ଏବଂ ଉପରୁ ଗୋଟାଏ ଲମ୍ବା ଦଉଡ଼ିରେ ଟୋକେଇଟାଏ ବାନ୍ଧି ତଳକୁ ପକାଇଦେଲା। ସେହି ଟୋକେଇରେ ସ୍ତ୍ରୀ ଲୋକଟି ରାଜାପୁଅକୁ ଧରି ଉପରକୁ ଉଠିଗଲା। ସେମାନେ ସେ ଦୁର୍ଗରୁ ଆଉ କେବେ ହେଲେ ବି ତଳକୁ ଓହ୍ଲାଇବେ ନାହିଁ। ସାରାଜୀବନ ଏଇ ଦୁର୍ଗରେ କଟାଇବାକୁ ରାଜାଙ୍କର ଆଦେଶ ହୋଇଥାଏ। କଳା ଲୋକଟି ତଳକୁ ଓହ୍ଲାଇ ଦଉଡ଼ି, ସିଡ଼ି ସବୁ ନେଇ ପୁଣି ଘୋଡ଼ାରେ ଚଢ଼ି ଫେରିଗଲା।

ଏଣିକି ପ୍ରତିମାସରେ ଥରେ, କଳା ଲୋକଟି କଳା ଘୋଡ଼ାରେ ବସି ଆସେ। ତାକୁ ରାଜକୁମାର ଓ ସ୍ତ୍ରୀ ଲୋକଟି ଦୁର୍ଗର ଝରକାରୁ

Digitized by srujanika@gmail.com

ଅନେକ ଚାକର ଥାନ୍ତି । ସବୁଥିର ଲୋକଟି ସେମାନଙ୍କ ପାଇଁ ଖାଇବା ଜିନିଷ, ରାଜକୁମାର ପାଇଁ ଖେଳଣା, ବସ୍ତ୍ର ଓ ଅନ୍ଦୁର କେତେ ପ୍ରକାର ଜିନିଷ-ଆଣି ଦେଇଯାଏ । ରାଜକୁମାର କେମିତି ଅଛି ତା ଖବର ନେଇ ଦେଇଯାଏ, ତାର ଭଲ ମନ୍ଦ ବୁଝି ସେ ଫେରିଯାଏ ।

ଯେତେଦିନ ଯାଏ ରାଜକୁମାର ସାନ ଥିଲା, ସେତେଦିନ ଯାଏ ମିନା ତାକୁ ଖେଳଣା ଖେଳିବାକୁ କି ଛବି ଦେଖିବାକୁ ଭଲ ଲାଗୁଥିଲା । କିନ୍ତୁ ସେ ଯେତେ ବଡ଼ ହେବାକୁ ଲାଗିଲା ତା ମନ ବି ସେମିତି ବଦଳିବାକୁ ଲାଗିଲା । ନିର୍ଜନ ଦୁର୍ଗରେ ତାକୁ ବଡ଼ ଏକାକୀ ଲାଗେ । ତା ସାଙ୍ଗରେ କଥା କହିବାକୁ କେହି ନାହାଁନ୍ତି, ତା ସାଙ୍ଗରେ ଖେଳିବାକୁ ବି କେହି ନାହାଁନ୍ତି । ସ୍ତ୍ରୀ ଲୋକଟି ଖାଲି ତାର ଭଲ ମନ୍ଦ ବୁଝେ । ଖୁଆଇ ଦିଏ, ଶୁଆଇ ପକାଏ, କିନ୍ତୁ ସେ ତ ତାର ସାଙ୍ଗ ନୁହେଁ । ସ୍ତ୍ରୀ ଲୋକଟି ଘରକାମ କରେ, ରାନ୍ଧେ, ରାଜାପୁଅକୁ ଖୁଆଏ, କାମ ସରିଲେ ବସି ସିଲେଇ କରେ । ସେଣୁ ଦୁର୍ଗ ଭିତରେ ରାଜାପୁଅ ଏ ଘରୁ ସେ ଘର ହୁଏ. ଧୁଷୁଡ଼ି ଧୁଷୁଡ଼ି ଘୁରି ବୁଲେ, କେବେ କେବେ ବେଙ୍ଗ ପରି ଡେଇଁ ଡେଇଁକା, ବା ଇଚ୍ଛା ହେଲେ କୁକୁର ଛୁଆ ପରି ଚାରିଗୋଡ଼ରେ ଭର ଦେଇ ଘରସାରା ଦଉଡ଼ୁଥାଏ । ତା ସାଙ୍ଗରେ ଖେଳିବାକୁ କି କଥା କହିବାକୁ କେହି ନ ଥାନ୍ତି ।

ଏମିତି ଧୀରେ ଧୀରେ ତାକୁ ଭାରି ବିରକ୍ତ ଲାଗିଲା । ସେ ବଡ଼ ହେଉଥାଏ, ବଡ଼ ହେବା ସାଙ୍ଗେ ସାଙ୍ଗେ ସେ ବଡ଼ ମନମରା ହୋଇ ଚୁପ୍ ଚୁପ୍ ବସି ରହିବାକୁ ଭଲ ପାଇଲା । ଅନେକ ସମୟରେ ସେ ଦୁର୍ଗର ଝରକା ପାଖରେ ବସି ଖୋଲା ନେଳ ଆକାଶକୁ ବା ତଳେ ଥିବା ଧୂସର ବାଲି ପଡ଼ିଆକୁ ଅନେଇ ରହେ । ଆକାଶରେ ମେଘ

Digitized by srujanika@gmail.com

ଆସେ, ଝଡ଼ ଆସେ, ପୁଣି ସୂର୍ଯ୍ୟକିରଣ ପଡ଼େ । ବାଦଲ ସବୁ ଆକାଶରେ ଭାସି ଭାସି ଯାଆନ୍ତି, ଚଢ଼େଇ ଉଡ଼ିଗଲେ ତାଙ୍କ ଛାଇ ତଳେ ମାଟିରେ ପଡ଼େ । ଏ ସବୁକୁ ସେ ଖାଲି ବସି ବସି ଦେଖେ ।

ଟିକିଏ ବଡ଼ ହେବାରୁ ରାଜକୁମାର ପାଠ ପଢ଼ିବାକୁ ଆରମ୍ଭ କଲା । ଯେଉଁ ସ୍ତ୍ରୀ ଲୋକଟି ତା ପାଖରେ ଥାଏ, ସେ ତାକୁ ବେଳେବେଳେ ପଢ଼ାଏ, ରାଜକୁମାର ପରି ତାର ବି ସମୟ କଟିବା ଦରକାର । ତା ଛଡ଼ା ରାଜକୁମାର ମଧ୍ୟ ତାକୁ ଇଆଡ଼ୁ ସିଆଡ଼ୁ ପ୍ରଶ୍ନ ପଚାରି ବିରକ୍ତ କରେ । 'ମୁଁ କିଏ,' 'ମୁଁ କାହିଁକି ଏଠି ଅଛି,' 'ମୁଁ କ'ଣ କରିବି', ଏମିତି ନାନା ପ୍ରଶ୍ନ ପଚାରି ତାକୁ ବ୍ୟସ୍ତ କରେ । 'ରାଜକୁମାର କିଏ' 'କାହାପୁଅ' ବା 'କେଉଁଠି ତାର ଘର' ଏ ସବୁ କହିବାକୁ ସ୍ତ୍ରୀ ଲୋକଟିକୁ ମନା ହୋଇଥାଏ । ତେଣୁ ପାଠ ପଢ଼ିଲେ ତାର ସମୟ କଟିବା ସଙ୍ଗେ ସଙ୍ଗେ ସେ ବିଭିନ୍ନ ବିଷୟ ଜାଣିବାକୁ ଇଚ୍ଛା କରି ବହୁ ପ୍ରକାର ବହି ପଢ଼େ ।

ବହି ପଢ଼ିବା ଫଳରେ ସେ ନାନା କଥା ଜାଣିବାକୁ ପାଇଲା । ଘର ପାଖରେ ଥିବା ଦୁର୍ଗର କାନ୍ଥର ବାହାରେ ଯେ ଆଉ ଗୋଟିଏ ସୁନ୍ଦର ପୃଥିବୀ ରହିଛି, ଏକଥା ସେ ଜାଣି ପାରିଲା । ତା ମନ ପରିବର୍ତ୍ତନ ହେବାକୁ ଲାଗିଲା । ସେ ବଡ଼ ଦୁର୍ବଳ ହୋଇଗଲା । ସବୁବେଳେ ମନମାରି ବସି ଭାବିବାକୁ ଭଲ ପାଇଲା । ବାହାର ପୃଥିବୀ ବା ତା ନିଜ ବିଷୟରେ ସେ କିଛି ହେଲେ ଜାଣି ନ ଥିଲା, କେବଳ ବହିରୁ ବାହାର ଦୁନିଆ କଥା ସେ ଯାହା ପଢ଼ୁଥିଲା ବା ଜାଣିବାକୁ ପାଉଥିଲା ।

ସେ ମନେ ମନେ ଭାବେ ଯଦି ସେ ଉଡ଼ିପାରନ୍ତା, କି ଯଦି ତାର ଚଢ଼େଇପରି ଦୁଇଟା ଡେଣା ଥାନ୍ତା, ସେ ଯଦି ଆକାଶକୁ,

Digitized by srujanika@gmail.com

ଭୂଇଁ ଉପରକୁ, ଯେଉଁଠାକୁ ଇଚ୍ଛା ସେଠାକୁ ଯାଇ ପାରନ୍ତା, ସତେ କେତେ ମଜା ହୁଅନ୍ତା ! ସେ କେବେ କେବେ ସ୍ତ୍ରୀ ଲୋକଟି ପାଖରେ ବାହାରକୁ ଯିବା ପାଇଁ ଅଳି କରେ । ଥରେ ସ୍ତ୍ରୀ ଲୋକଟି ବିରକ୍ତ ହୋଇ କହିଲା "ତୁ କେବେହେଲେ ବାହାରକୁ ଯାଇ ପାରିବୁ ନାହିଁ, ତେଣୁ ମତେ ସବୁବେଳେ ସେ ପ୍ରଶ୍ନ ପଚାରି କାହିଁକି ବ୍ୟସ୍ତ କରୁଛୁ ?"

ଏ କଥା ଶୁଣି ତା ମନରେ ଭାରି ଦୁଃଖ ହେଲା । ସେ କହିଲା, "ମୁଁ ସବୁ କଥା ଜାଣିବାକୁ ଚାହେଁ, ମୋତେ କିଏ ସବୁ କଥା କହନ୍ତା କି, ମୋତେ କିଏ ଭଲ ପାଇବାକୁ ଥାନ୍ତା କି !" ଏମିତି କହିବା ସାଙ୍ଗେ ସାଙ୍ଗେ ତା ପଛପଟେ ଠକ୍ ଠକ୍ ଶବ୍ଦ ହେଲା । ସେ ବୁଲି ଦେଖିଲା ବେଳକୁ ତା ପଛପଟେ ଛୋଟିଆ ବୁଢ଼ୀଟିଏ ଠିଆ ହୋଇଛି । ତାର ଗୋଡ଼ ଅଛି, ବାଳ ସବୁ ଧଳା ହୋଇ-ଯାଇଛି । ତାକୁ ଘେରି କେମିତିକା ଗୋଟେ ଧୂସରିଆ ଛାଇ ତା ଚାରିପାଖରେ ରହିଛି । ରାଜକୁମାର କେବଳ ଦୁଇଜଣ ଲୋକଙ୍କର ଗୋଡ଼ ଥିବାର ଦେଖିଥିଲା । ସେମାନେ ହେଲେ ଜଜା ଲୋକଟି ଓ ତା ପାଖରେ ଥିବା ସ୍ତ୍ରୀ ଲୋକଟି । ତାର ନିଜ ଗୋଡ଼ ଦୁଇଟି, ମଧ୍ୟ ସେ ବଢ଼ିବା ସାଙ୍ଗେ ସାଙ୍ଗେ ବଢ଼ୁଥାଏ । କିନ୍ତୁ ତା ଗୋଡ଼ ଦୁଇଟା ଅଣ୍ଟା ପାଖରୁ ତଳକୁ ସେମିତି ନଡ଼ନଡ଼ିଆ ହୋଇ ରହିଥାଏ, ସେଥିପାଇଁ ସେ ଗୁରୁଣ୍ଡି ଗୁରୁଣ୍ଡି ଚାଲୁଥାଏ । ଠିଆ ହେବାକୁ ତା ଗୋଡ଼ରେ ଜୋର ନ ଥାଏ । ତେଣୁ ଅନ୍ୟମାନଙ୍କର ମଧ୍ୟ ଲମ୍ବା ଗୋଡ଼ ଅଛି ଓ ସେମାନେ ଠିଆ ହୋଇ ଚାଲି ପାରୁଥିବେ, ଏ ଧାରଣା ତାର ନ ଥିଲା ।

ବୁଢ଼ୀଟି ରାଜକୁମାରକୁ କୋଳକୁ ଡାକି କହିଲା, "ତୁ ମୋ

Digitized by srujanika@gmail.com

ପୁଅ, ତୁ ମୋତେ ଆଜ ପର୍ଯ୍ୟନ୍ତ ଡ଼ାକ ନଥିଲୁ ବୋଲି ମୁଁ ଆସି ନ ଥିଲି । ତୁ ଯେମିତି ମୋତେ ଡ଼ାକିଲୁ, ମୁଁ ଆସିଲି ।”

ରାଜା ପୁଅ ତାକୁ ଦେଖି ଭାରି ଖୁସି ହୋଇଗଲା । କାରଣ ସାନପିଲାମାନେ ତାଙ୍କ ମାଆଙ୍କୁ ଦେଖିଲେ ଖୁସି ହୁଅନ୍ତି ବୋଲି ସେ ବହିରେ ପଢ଼ିଥିଲା । ସେ ପଚାରିଲା, “ତୁମେ କ’ଣ ମୋର, ମାଆ ?”

ବୁଢ଼ୀ କହିଲା, “ମୁଁ ତୋର ମା ନୁହେଁରେ, ତୋ ମା କିନ୍ତୁ ମୋର ଭାରି ସାଙ୍ଗ । ତୁ ତ ଅବିକଳ ତାରି ପରି ଦେଖିବାକୁ ହୋଇଛୁ । ମୁଁ ତୋର ଧରମ ମା ।”

ରାଜାପୁଅ କହିଲା, “ତୁମେ ତାକୁ ମୋ ପାଖକୁ ଆସିବା ପାଇଁ କହିବ କି ? ବୁଢ଼ୀ କହିଲା, “ସେ ତ ତୋ ପାଖକୁ ଆସି ପାରିବ ନାହିଁ, କିନ୍ତୁ ସେ ତୋର ସବୁ କଥା ଜାଣେ । ସେ ତୋତେ ଭାରି ଭଲ ପାଏ । ମୁଁ ବି ତୋତେ ଭଲ ପାଏ । ସେଥିପାଇଁ ମୁଁ ତୋ ପାଖକୁ ଆସିଛି । ତୋର ଯାହା ଦରକାର ମୋତେ କହ ।

ରାଜାପୁଅ କହିଲା, “ମୋର କାହିଁକି କ’ଣ ଦରକାର ହେବ । ମୋର କିଛି ଦରକାର ନାହିଁ ।” ସେଇଠୁ ବୁଢ଼ୀ ତା ଛୋଟିଆ ଲଡ଼ଲଡ଼ିଆ ଗୋଡ଼କୁ ଚାହିଁଲା । କିନ୍ତୁ ରାଜାପୁଅ ତ ଜାଣି ନ ଥାଏ ତା ପରି ଆଉ ସବୁ ପିଲାମାନଙ୍କର ଦୁଇଟା ଲମ୍ବା ଲମ୍ବା ଗୋଡ଼ ଅଛି ବୋଲି । ସେ ତ କାହାକୁ ଦେଖିନି, ଜାଣିବ କେମିତି ?

ବୁଢ଼ୀ କହିଲା, “ଅଚ୍ଛା ହଉ, ତୋର ଯଦି କିଛି ଦରକାର ନାହିଁ, ତେବେ ମୋ ସହିତ ଟିକିଏ ଗପ କର ।” ରାଜାପୁଅ

Digitized by srujanika@gmail.com

ପଚାରିଲେ, "ତମ ନା କ'ଣ ?" ବୁଢ଼ୀ କହିଲା, "ମୋର ତ ବହୁତ ନା ଅଛି, ମୁଁ ତୋର ଧରମ ମା ।"

ରାଜାପୁଅ ସେକଥା ଶୁଣି ଖୁବ ଖୁସି ହୋଇଗଲା । ସେ କହିଲା, "ମା ତୁ ମୋ ସାଙ୍ଗେ ଖେଳିବୁ ? ମୋ ପାଖରେ ବହୁତ ଖେଳନା ଅଛି ।"

ସେଇଠୁ ସେ ଦୁହେଁ ବସି ଖେଳିଲେ ଓ ଖେଳୁ ଖେଳୁ ଗପ କଲେ । ବୁଢ଼ୀ ପଚାରିଲା "ହଇରେ ପୁଅ, ତୋତେ କ'ଣ ଏଠି ଭଲ ଲାଗୁନି ?" ରାଜାପୁଅ କହିଲା, "କାହିଁକି ? ମୋର ତ କିଛି ଅସୁବିଧା ହେଉନି, ମୋର ଖାଇବାକୁ ଭଲ ଭଲ ଜିନିଷ ଅଛି; ପିନ୍ଧିବାକୁ ବହୁତ ସୁନ୍ଦର ସୁନ୍ଦର ବସ୍ତ୍ର ଅଛି, ମୋର ଆଉ କ'ଣ ଦରକାର ?"

ବୁଢ଼ୀ କହିଲା,"ତୋର ତେବେ କିଛି ଜିନିଷ ଆଉ ଦରକାର ନାହିଁ ।" ରାଜାପୁଅ କହିଲା,"ହଁ ମୋର ଗୋଟିଏ କଥା ଅଭାବ ଅଛି । ତମେ ମୋତେ ମୋ ପରି ଆଉ ଗୋଟିଏ ପିଲା ଆଣି ଦେଇ ପାରିବ ? ଯାହା ସାଙ୍ଗରେ ବସି ମୁଁ ଖେଳିବି ?"

ବୁଢ଼ୀ ମନ ଦୁଃଖରେ କହିଲା, "ସେଇ ଜିନିଷ ତ ମୁଁ ତୋତେ ଦେଇ ପାରିବି ନାହିଁ । କିନ୍ତୁ ମୁଁ ତୋତେ ସାହାଯ୍ୟ କରିବି ।" ରାଜାପୁଅ କହିଲା, "ମୋର କି ସାହାଯ୍ୟ କରିବ ? ମୁଁ ତ ସାହାଯ୍ୟ ଚାହୁଁନି । ତମେ ଏମିତି କଥା କାହିଁକି କହୁଛ ?" ବୁଢ଼ୀ ତାକୁ ବହୁତ ସମୟ କୋଳରେ ବସାଇ ବସିରହିଲା । ସେଇଠୁ ରାଜାପୁଅ କହିଲା, 'ମା ତମେ ମତେ ଛାଡ଼ି କୁଆଡ଼େ ହେଲେ ଯିବନି ।" ବୁଢ଼ୀ କହିଲା,"କିନ୍ତୁ ମୋତେ ତ ଯିବାକୁ ହେବ । ଅଚ୍ଛା, ମୁଁ ଯିବା ଆଗରୁ ତୋତେ ଗୋଟିଏ ଜିନିଷ ଦେଇଯିବି ।" ରାଜାପୁଅ କହିଲା,"ସେଇଟା କ'ଣ ?" ସେ କହିଲା, "ସେଇଟା ଗୋଟେ ଜାଦୁମନ୍ତ୍ରା ଗୁଦର ।"

Digitized by srujanika@gmail.com

ରାଜକୁମାର କହିଲା, "ସେଇଟା ମୋର କ'ଣ ହେବ ? ତୁମେ ତ ଜାଣ ମୁଁ ଚାଲି ପାରେ ନାହିଁ, ତେଣୁ କେବେହେଲେ କାହାରକୁ ଯାଇ ପାରେ ନାହିଁ ।" ବୁଢ଼ୀ କହିଲା, "ସେଇଥିପାଇଁ ତ ମୁଁ ତତେ ଏଇଟା ଦେଉଛି । ଏ ଖଦରକୁ ତୁ ତଳେ ବିଛାଇ ଦେବୁ । ତା'ପରେ ଦେଖିବୁ ଖଦରର ଚାରିକଡ଼ ଡଙ୍ଗାପରି ମୋଡ଼ ହୋଇ ଯାଉଛି । ଯେତେବେଳେ ସେଇଟା ପୂରାପୂରି ଚାରିପାଖକୁ ମୋଡ଼ ହୋଇଯିବ ସେତେବେଳେ ତୁ ଯାଇ ଘରର ସ୍କାଇଲାଇଟକୁ ଖୋଲି ଦେବୁ ଏବଂ ନିଜେ ଆସି ଏଇ ଖଦର ଉପରେ, ଠିକ୍ ମଝିକୁ ବସିଯିବୁ । ତାପରେ କହିବୁ "ଆବ୍ରାକାବ୍ରା ଦମ, ଦମ୍, ଦମ୍ ।" କହିବା ସାଙ୍ଗେ ସାଙ୍ଗେ ତତେ ସେ କାହାରକୁ ନେଇଯିବ ଆଉ ତୁ ଆକାଶରେ ଉଡ଼ି ଉଡ଼ି କାହାର ଦୁନିଆର ସବୁ କଥା ଦେଖି ପାରିବୁ । ପୁଣି ଯେତେବେଳେ ତୋର ଫେରିବାକୁ ମନ ହେବ ତୁ କହିବୁ ଆବ୍ରାକବ୍ରା ଟମ୍ ଟମ୍ ଟମ୍ !" ଏଥର ତୁ ଏଇଟା ରଖ୍, ମୁଁ ଯାଉଛି । ତୋର ଦରକାର ହେଲେ, ମୋତେ ପୁଣି ମନେ ପକାଇବୁ । ମନେ ରଖିଥିବୁ ସବୁବେଳେ ଖଦରର ମଝିକୁ ବସିବୁ ।"

ଏକଥା କହି ବୁଢ଼ୀ ଚାଲିଗଲା । ରାଜକୁମାର ଉଡ଼ନ୍ତା ଖଦରକୁ ଧରି କିଛି ସମୟ ଦେଖିଲା । ତା ପରେ ତାକୁ ଖୋଲି ଘରର ଚଟାଣ ଉପରେ ସେ ବିଛାଇ ଦେଲା । ଦେଖୁ ଦେଖୁ ଖଦରର ଚାରିପାଖ ଉପରକୁ ଡଙ୍ଗାପରି ମୋଡ଼ି ହୋଇଗଲା ଆଉ ତା ଭିତରେ ଜଣେ ଲୋକ ବସି ପାରିବା ଭଳି ଜାଗା ହୋଇଗଲା ।

ତା'ପରେ ରାଜକୁମାର ଏକା ଉଆଁକେ ଯାଇ ଖଦର ମଝିରେ ବସି ପଡ଼ିଲା । ଭୟରେ ତା ଛାତି ଥରିଗଲା, ଆଉ ତା ଛୋଟ ଛୋଟ ଲଡ଼ଲଡ଼ିଆ ଗୋଡ଼ ମଧ୍ୟ ଥରିଗଲା । ସେ କ'ଣ ଘଟିବ ବୋଲି ଅପେକ୍ଷା କରି ଖଦର ମଝିରେ ଭୟରେ ବସି ରହିଲା ।

Digitized by srujanika@gmail.com

ବୁଦବୁଦଟି ଧୀରେ ଧୀରେ ଉପରକୁ ଉଠିଲା । ସ୍କାଇଲାଇଟ୍‌କୁ ଯାଇ ଛୁଇଁଲା । ରାଜକୁମାରର ମୁଣ୍ଡ ଯାଇ ସ୍କାଇଲାଇଟ କାଚରେ ବାଡ଼େଇ ହୋଇଗଲା । ସେ ଜୋରରେ ପାଟି କରି ଉଠିଲା, "ଉଃ ମୋତେ କାଟୁଛି !" ଏକଥା କହିବା ସାଙ୍ଗେ ସାଙ୍ଗେ ତାର ବୁଢ଼ୀମା କଥା ମନେ ପଡ଼ିଗଲା । ସେ କହିଥିଲା, ସ୍କାଇଲାଇଟ୍‌କୁ ଆଗ ଖୋଲି-ଦେବାକୁ । ତେଣୁ ସେ ସ୍କାଇଲାଇଟର କବାଟ ଖୋଲିଦେଲା, ବୁଦବୁଦଟି ଆଉ ତା ମୁଣ୍ଡ କାନ୍ଥରେ ବାଜେଇଲା ନାହିଁ । ସେ ଯେମିତି କବାଟ ଖୋଲିଛି ବୁଦବୁଦଟା ହଠାତ୍ ହାଇଁ କରି ପଦାକୁ ବାହାରି ନେଳି ଆକାଶରେ ଚଢ଼େଇପରି ଭାସିବାକୁ ଲାଗିଲା ।

କିନ୍ତୁ ଏତେ ଉଚ୍ଚରୁ ତାକୁ ଭୂଇଁ ଉପରର ଜିନିଷ ସବୁ ଭଲ କରି ଦେଖା ଗଲାନାହିଁ । ତେଣୁ ସେ ମନେ ମନେ କହିଲା ମୋର ଦୁଇଟା ଚଷମା ଥାନ୍ତା କି, ମୁଁ ତା ସାହାଯ୍ୟରେ ଭଲକରି ସବୁ କଥା ଦେଖି ପାରନ୍ତି । ଏକଥା କହିବା ସାଙ୍ଗେ ସାଙ୍ଗେ ତାକୁ ଲାଗିଲା ଯେମିତି କ'ଣ ଗୋଟାଏ ଓଜନିଆ ଜିନିଷ ତା ନାକ ଉପରେ ମାଡ଼ି ହୋଇ-ଗଲା । ସେ ଦେଖିଲା ଗୋଟାଏ ସୁନାର ସୁନ୍ଦର ଚଷମା ତା ଆଖିରେ ଲାଗିଛି । ସେଇ ଚଷମା ଦେଇ ସେ ଭୂଇଁ ଉପରର ଟିକି ଟିକି ଘାସ, ଟିକି ଟିକି ଫୁଲ ଏବଂ ତା ଉପରେ ବୁଲୁଥିବା ଛୋଟ ଛୋଟ ପୋକ ମାନଙ୍କୁ ମଧ୍ୟ ଦେଖି ପାରୁଛି । ତା'ପରେ ସେ ଆକାଶକୁ ଚାହିଁଲା, ନେଳି ଆକାଶର ବହୁଦୂରରେ ତାକୁ ଗୋଟାଏ କଳା, ଢେଉ ଢେଉକା ଗାର ପରି କ'ଣ ଦେଖାଗଲା । ତା ଚଷମା ଦେଇ ଦେଖିଲା ଯେ ସେ କଳା ଗାରଟା ଚଢ଼େଇ ମାନଙ୍କର ଗୋଟାଏ ଲମ୍ବାଧାଡ଼ି । ଚଢ଼େଇମାନେ ଆକାଶରେ ଧାଡ଼ି ହୋଇ ଉଡ଼ି ଯାଉଛନ୍ତି ।

ଚଢ଼େଇମାନଙ୍କୁ ଦେଖି ରାଜପୁଅ ମନେ ମନେ କହିଲା, "କେଡେ ଖୁସିରେ ତମେ ସବୁ ଉଡ଼ିଯାଉଛ, ମୁଁ ଯଦି ତମ ପରି

Digitized by srujanika@gmail.com

ତେଣାମେଲି ଉଡ଼ିପାରନ୍ତି, ତେବେ ଏ ସୁନ୍ଦର ଦୁନିଆଟାକୁ ମୁଁ ବୁଲି ଆସନ୍ତି ।" ଉଡ଼ନ୍ତା ଚଢ଼େଇମାନଙ୍କୁ ରାଜକୁମାର ମନ ଦୁଃଖରେ ଅନେଇ ରହିଲା ।

ତା ସୁନା ଚଷମାରେ ସିନା ରାଜକୁମାର ସବୁ କଥା ଦେଖି ପାରୁଥିଲା, କିନ୍ତୁ ସେ ଏତେ ଉପରେ ବସୁଥିଲା ଯେ ତା କାନକୁ କିଛି ଭଲ କରି ଶୁଭୁ ନ ଥିଲା । ତାକୁ ଖାଲି ଦୂରରୁ ଗୁଣୁ ଗୁଣୁ ହୋଇ କ'ଣ ସବୁ ଶୁଭି ଯାଉଥିଲା । ସେଇଠୁ ସେ କହିଲା, "ବୁଢ଼ୀମା, ତମେ ସିନା ମୋତେ ସୁନ୍ଦର ଚଷମାଟାଏ ଦେଇଛ ସବୁ କଥା ଦେଖିବାପାଇଁ, ସେମିତି ଯଦି ତମେ ମୋତେ କାନରେ ଲଗାଇ ଶୁଣିବାପାଇଁ ଦୁଇଟା କାନଯନ୍ତ୍ର ଦିଅନ୍ତ କେତେ ଭଲ ହୁଅନ୍ତା !"

ଏକଥା କହିବା ସାଙ୍ଗେ ସାଙ୍ଗେ ତା କୋଳରେ ରୁପାର କାନ ଯନ୍ତ୍ର ଥିବା ବାକ୍ସଟିଏ ଆସି ଥୁଆ ହୋଇଗଲା । ସେ ଦେଖିଲା ସେ ଯନ୍ତ୍ର ଦୁଇଟା ତା ଦୁଇ କାନରେ ଠିକ୍ ଖାପ ଖାଇ ଯାଉଛି । କାନଯନ୍ତ୍ର ଲଗାଇବାରୁ ରାଜକୁମାର କାନକୁ ଯେତେ ଛୋଟ ବଡ଼ ଶବ୍ଦ ସବୁ ପରିଷ୍କାର କରି ଶୁଭିଲା । ସେ ତା ନିଗୁଟିଆ ଦୁର୍ଗରେ ରହି ଏତେ ପ୍ରକାର ଶବ୍ଦ ଆଗରୁ ଜମା ଶୁଣି ନଥିଲା । ତା ମୁହଁ ଆନନ୍ଦରେ ଝଲସି ଉଠିଲା । ସେ ଖୁସିରେ ସାରା ଦୁନିଆକୁ ଦେଖିବାକୁ ଲାଗିଲା ଓ ନାନାପ୍ରକାର ଶବ୍ଦ ସବୁ ଶୁଣି ଶୁଣି ଆକାଶରେ ଘୁମିବାକୁ ଲାଗିଲା ।

ଏ ସବୁ ଦେଖିସାରିବା ପରେ ସେ ମନେ ମନେ କହିଲା, "ବୁଢ଼ୀ ମା, ଏ ଚଢ଼େଇ, ଆକାଶ, ଏ ସୁନ୍ଦର ପୃଥିବୀଟା ତ ମତେ ଖୁବ ଭଲ ଲାଗୁଛି, ହେଲେ ମୁଁ ମୋପରି ଗୋଟିଏ ପିଲା ଦେଖିବାକୁ ପାଆନ୍ତି କି ?"

Digitized by srujanika@gmail.com

ଏ କଥା କହିବା ପରେ ତାକୁ ଜଣାଗଲା, ଯେମିତି ତା ପଛ ପଟେ କଏ ଗୋଟିଏ ନିଶ୍ୱାସଟିଏ ଅତି ଦୁଃଖରେ ପକାଇଲା । ଉଡ଼ନ୍ତା ଘୋଡ଼ାଟା କିଛି ସମୟପାଇଁ ସ୍ଥିର ହୋଇ ରହିଗଲା । ତା ଦେଖି ରାଜକୁମାର ଭାବିଲା ବୋଧେ ତା ବୁଢ଼ୀମା ତା ଉପରେ ରାଗିଗଲେ, କାରଣ ସେ ବହୁତ ବହୁତ ଜିନିଷ ପାଇବାକୁ ଇଚ୍ଛା କରୁଛି ।

ତା'ପରେ ହଠାତ୍ ତା କାନକୁ ଗୋଟାଏ ଚୁମ୍ୱିଲା କଏ ଅତି ଜୋର୍‌ରେ ମାରିବାର ଶୁଣାଗଲା । ସେ ତଳକୁ ଅନେଇ ଦେଖିଲା, କ'ଣ ଗୋଟାଏ ଡେଇଁ ଡେଇଁକା ଯାଉଛି । ସେଇଟା କିନ୍ତୁ ଘୋଡ଼ା ଉପରେ ନ ଡେଇଁ ଦୁଇଟା ଟାଙ୍ଗୁଆ ସିଧା ଗୋଡ଼ରେ ଚାଲୁଛି । ରାଜକୁମାର ପରି ପିଲାଟିଏ ତଳେ, ମାଟି ଉପରେ ତା ଦୁଇ ଲମ୍ବା ଗୋଡ଼ରେ ରାଜକୁମାରର ଉଡ଼ନ୍ତା ଘୋଡ଼ାକୁ ଅନେଇ ଅନେଇ ଗୋଡ଼ାଉଛି । ପିଲାଟିର ମୁଣ୍ଡରେ ବୋଝେ କଳା ବାଳ ଓ ମୁହଁରେ ହସ । ରାଜକୁମାର ତାକୁ ଦେଖି ଯେତିକି ଆଶ୍ଚର୍ଯ୍ୟ ହେଲା ସେତିକି ଖୁସି ବି ହେଲା ।

ସେ ଖୁସିରେ କହି ପକାଇଲା, "ବୁଢ଼ୀମା, ସେ ପିଲାଟା ଆସି ମୋ ସାଙ୍ଗେ ଖେଳନ୍ତାକି ? ମୁଁ ତଳକୁ ତା ପାଖକୁ ଯାଆନ୍ତି. ନ ହେଲେ ତାକୁ ଉପରକୁ ନେଇ ଆସି ତା ସାଙ୍ଗରେ ଖେଳନ୍ତି ! କେଡ଼େ ମଜା ହୁଅନ୍ତା !"

କିନ୍ତୁ ବୁଢ଼ୀମା ତ ସେ ଯାହା ଚାହିଁବ ସବୁ ଜିନିଷ ଦେଇପାରିବ ନାହିଁ । ତେଣୁ ଉଡ଼ନ୍ତା ଘୋଡ଼ାଟା ଆଉ ଆକାଶରେ ନ ଉଡ଼ି ଗୋଟାଏ ଜାଗାରେ ରହିଗଲା । ତା ଦେଖି ତଳେ ଥିବା ପିଲାଟି ଭାବିଲା ଯେ ଆକାଶରେ ନିଶ୍ଚୟ ଗୋଟାଏ ବଡ଼ ଚଢ଼େଇ ଉଡ଼ୁଛି । ତା କୁକୁର ବି ସେ ଉଡ଼ନ୍ତା ଘୋଡ଼ାକୁ ଦେଖି ଭୁକିବାକୁ ଲାଗିଲା । ତାପରେ କୁକୁର ଓ ସେ ତଳେ ଉଡ଼ନ୍ତା ଘୋଡ଼ା ପଛରେ

Digitized by srujanika@gmail.com

ଗୋଡ଼େଇବାକୁ ଲଗିଲେ । ରାଜକୁମାର ସେମାନଙ୍କୁ ଅନେଇ ରହିଲା । ସେମାନଙ୍କୁ ଦେଖି ତା ମୁଁହଟି ଶୁଖିଗଲା, ସେ ମନ ଦୁଃଖରେ କାନ୍ଦ ପକାଇଲା ।

ସେ ଭାବିଲା, "ଏମିତିଆ ଦୁଇଟା ଗୋଡ଼ରେ ଦୌଡ଼ିବାକୁ ସତେ କେତେ ମଜା ଲାଗୁଥିବ, କେତେ ଭଲ ଲାଗୁଥିବ !" କିନ୍ତୁ ତାର ତ ଦୁଇଟା ଲମ୍ବା, ଟାଣୁଆ ଗୋଡ଼ ନାହିଁ, ସେ ଦୌଡ଼ିବ କେମିତି ? ସେଇଠୁ ସେ ବୁଝିପାରିଲା କାହିଁକି ତା ବୁଢ଼ୀ ମା ତାକୁ ଏ ଉଡ଼ନ୍ତା ଚାଦର ଦେଇଥିଲା, ଆଉ ଆକାଶରେ ଉଡ଼ି ସବୁ ଜିନିଷ ଦେଖିବାକୁ କହିଥିଲା ।"

ସେ ମନ ଦୁଃଖରେ ଆଉ କିଛି ଜିନିଷ ଦେଖିବାକୁ ଇଚ୍ଛା କଲା ନାହିଁ । ତା ଚଷମା ଓ କାନଯନ୍ତ୍ର ଦୁଇଟା କାଢ଼ି କୋଳରେ ରଖିଲା । କ'ଣ ହେବ ସେ ଦୁଇଟା ପିନ୍ଧି, ଯଦି ସେ ନିଜେ ଦୌଡ଼ିକରି ଖେଳି ନ ପାରିଲା, ସେ ଉଡ଼ନ୍ତା ଚାଦରର ମଝିକୁ ଘୁଞ୍ଚିଆସି ତା ଲଡ଼ଲଡ଼ିଆ ଗୋଡ଼ ଦୁଇଟାକୁ ଧରି ଆକାଶକୁ ଚାହିଁ ରହିଲା ।

ଏମିତି ବସିଥିବା ବେଳେ ହଠାତ୍ ଗୋଟିଏ ଚଢ଼େଇର ସୁନ୍ଦର ଗୀତ ତା କାନରେ ବାଜିଲା । ଠିକ ଚଢ଼େଇଟି ଆକାଶରେ ଉଡ଼ି ଉଡ଼ି ରାଜକୁମାର ପାଖକୁ ଆସିଲା । ରାଜକୁମାର ତାକୁ ଦେଖି ଅତି ଖୁସିରେ ଧରିବାକୁ ହାତ ବଢ଼ାଇଲା । ତା ଗୀତ ଶୁଣି ସେ ତା ମନର ଦୁଃଖ ଭୁଲିବାକୁ ଚେଷ୍ଟା କଲା । ଦେଖୁ ଦେଖୁ ସେ ଠିକ ଚଢ଼େଇଟା ଆସି ତା ହାତ ଉପରେ ବସିଗଲା । ରାଜକୁମାରର ଆନନ୍ଦ ଦେଖେ କିଏ ! ଯାହାକୁ କେହି ଧରି ପାରନ୍ତି ନାହିଁ, ସେ ଆସି ନିଜେ ତା ହାତରେ ଧରା ଦେଇଛି । ରାଜକୁମାର ତାର ମନ କଷ୍ଟ ଭୁଲି ଚଢ଼େଇ ସାଙ୍ଗରେ ଅତି ଖୁସିରେ କଥାବାର୍ତ୍ତା କରିବାକୁ ଲାଗିଲା ।

Digitized by srujanika@gmail.com

ଯେଣୁ ସେ ଯେମିତି ତା ନଅତିଆ ଦୁର୍ଗ ପାଖରେ ପହଞ୍ଚିଲା ସେ ଭାବିଲା, "ଆହା ଟିକି ଚଢ଼େଇ, ତୁ ମୋ ସାଙ୍ଗରେ କ'ଣ ଏ ନିର୍ଜନ ଦୁର୍ଗରେ ରହିବୁ ? ମୁଁ ସିନା ଏ ଦୁର୍ଗରେ ରହି ରହି ମୋର ଅଭ୍ୟାସ ହୋଇଗଲାଣି, କିନ୍ତୁ ତୁ ତ ମୋ ପରି ରହିପାରିବୁନି । ତୋ ଗୀତ ସିନା ମୋତେ ଭଲ ଲାଗୁଛି କିନ୍ତୁ ଦୁର୍ଗରେ ଥିବା ସ୍ତ୍ରୀ ଲୋକଟିକୁ ତ ଭଲ ଲାଗିବନି । ନା, ଟିକି ଚଢ଼େଇଟି ମୋର, ତୁ ଖୋଲା ଆକାଶର ଚଢ଼େଇ, ତୁ ଆକାଶକୁ ଉଡ଼ିଯା ।" ଏକଥା କହି ସେ ତା ହାତ ମେଲା କରି ଚଢ଼େଇକୁ ଆକାଶକୁ ଛାଡ଼ିଦେଲା । ଟିକି ଚଢ଼େଇଟା ଉଡ଼ି ଉଡ଼ି ନୀଳ ଆକାଶରେ କାହିଁ କେତେ ଉପରକୁ ଚାଲିଗଲା । ରାଜାଝିଅ ତାକୁ ମନ ଦୁଃଖରେ ଅନେଇ ରହିଲା ।

ରାଜକୁମାର ଆସି ତା ଦୁର୍ଗ ଦୁଆର ମୁହଁରେ ପହଞ୍ଚି କହିଲା, 'ଆବ୍ରାକାବ୍ରା ଠମ୍, ଠମ୍, ଠମ୍ ।' ତାପରେ ସେ ଖାଇପିଇ ଚୁପ ଚାପ ଶୋଇବାକୁ ଗଲା । ଆଜି ତା ଉଡ଼ନ୍ତା ଘୋଡ଼ାର ଘର ଭିତରକୁ ଆସି ତଳେ ବନ୍ଦ ହୋଇଗଲା । ଏତିକି ବେଳେ ପୁଣି ସେ ତା ଘରର ଝରକା ପାଖରେ ଚଢ଼େଇର ମଧୁର ଗୀତ ଶୁଣିବାକୁ ପାଇଲା । ସେଇଦିନଠାରୁ ଯେତେବେଳେ ରାଜକୁମାର କାନପାରି ଟିକି ଚଢ଼େଇର ଗୀତ ଶୁଣିବାକୁ ଇଚ୍ଛା କରେ ତା ଦୁର୍ଗ ପାଖରେ ସେ ତା ଗୀତ ଶୁଣିବାକୁ ପାଏ । ବେଳେ ବେଳେ ସେ ତା ଦୁର୍ଗର ଝରକା ପାଖରେ ବସି ଖୋଲା ଆକାଶକୁ ଚାହିଁ ରହି ଟିକି ଚଢ଼େଇର ମଧୁର ଗୀତକୁ ଶୁଣେ । ଆଜି ସେ ତା ଉଡ଼ନ୍ତା ଘୋଡ଼ାପାଇଁ ମନ ଦୁଃଖ କରେ ନାହିଁ ।



Digitized by srujanika@gmail.com




ତମେ ଜନ୍ମ ହେବା ବହୁଦିନ ଆଗର କଥା । ସେତେବେଳେ ଜଣେ ରାଜା ଥାଆନ୍ତି । ତାଙ୍କ ରାଣୀଙ୍କର ଗୋଟିଏ କୋଳ ପୁଅ । ରାଣୀ ସେ ପୁଅକୁ ଭାରି ଭଲ ପାଆନ୍ତି । ଥରେ ରାଣୀ ଖୁସିରେ ରାଜାପୁଅକୁ ଗୋଟିଏ ଷଣ୍ଢ ଦେଲେ, ତା ସହିତ ଖେଳିବା ପାଇଁ । ରାଜାପୁଅ ତା ଷଣ୍ଢକୁ ଭାରି ଭଲ ପାଏ । କିଛିଦିନ ପରେ ରାଣୀ ମରିଗଲେ, କିନ୍ତୁ ମରିବା ପୂର୍ବରୁ ସେ ରାଜାଙ୍କୁ କହିଗଲେ ଯେ ଯେମିତି ରାଜାପୁଅଠାରୁ ଷଣ୍ଢକୁ ସେ ଅଲଗା ନ କରନ୍ତି । ରାଜା ମଧ୍ୟ ପ୍ରତିଜ୍ଞା କଲେ ଯେ ସେ କେବେହେଲେ ଷଣ୍ଢକୁ ରାଜାପୁଅ ପାଖରୁ ଅଲଗା କରିବେନି ।

ଏମିତି କିଛିଦିନ ବିତିଗଲା । ରାଣୀ ମରିଯିବାରୁ ରାଜା ପୁଣି ଗୋଟିଏ ନୂଆ ରାଣୀ ଆଣିଲେ କିନ୍ତୁ ନୂଆରାଣୀ ରାଜାପୁଅକୁ ବା

Digitized by srujanika@gmail.com

ତା ଷଣ୍ଢକୁ ମୋଟେ ଭଲ ପାଆନ୍ତି ନାହିଁ । ରାଜାପୁଅକୁ ଷଣ୍ଢ ସହିତ ବୁଲିବା ଦେଖିଲେ ତାଙ୍କୁ ଭଲ ଲାଗେ ନାହିଁ । କିନ୍ତୁ ସେମାନଙ୍କୁ ଅଲଗା କରିବା ପାଇଁ ସେ ରାଜାଙ୍କୁ ମଧ୍ୟ କୌଣସି ପ୍ରକାରେ ରାଜି କରେଇ ପାରନ୍ତି ନାହିଁ । ସେଇଠୁ ରାଣୀ ତାଙ୍କ ପାଖରେ ଥିବା ଦାସୀ ସହିତ ଏ ବିଷୟରେ କଥାବାର୍ତ୍ତା କଲେ, କେମିତି ସେ ଷଣ୍ଢକୁ ରାଜାପୁଅଠାରୁ ଅଲଗା କରିବେ । ଦାସୀ ତାଙ୍କୁ ଏକ ଉପାୟ ବତେଇ ଦେଲା । ସେ ରାଣୀଙ୍କୁ କହିଲା, "ତମେ ଦେହ ଖରାପ ହୋଇଛି ବୋଲି ଶୋଇରହ, ତା'ପରେ ଯାହା ଯାହା ହେବ ମୁଁ କରିବି ।"

ତେଣୁ ରାଣୀ ଦେହ ଖରାପ ହୋଇଛି ବୋଲି ଛଳନା କରି ଶୋଇ ରହିଲେ ଓ ତାଙ୍କ ଦାସୀକୁ ଡକାଇ ପଠାଇଲେ । ଦାସୀ ଆସି ରାଣୀଙ୍କୁ ପରୀକ୍ଷା କରି କହିଲା, "ଏ ରୋଗ କେବଳ ଗୋଟିଏ ଔଷଧରେ ଭଲ ହେବ ।" ରାଜା ତ ରାଣୀଙ୍କ ଦେହ ଭଲ ହେବାପାଇଁ ବ୍ୟସ୍ତ ହେଉଥାନ୍ତି । ସେ ଦାସୀକୁ କହିଲେ, "ସେ ଔଷଧଟା କ'ଣ କହ, ଯେଉଁଠୁ ହେଲେ ଆଣିବା ।" ଦାସୀ କହିଲା, "ଏ ରୋଗ ଭଲ ହେବାପାଇଁ ରାଜାପୁଅ ଷଣ୍ଢର ତାଜା ପୋଷ ରକ୍ତ ଦରକାର ।" କିନ୍ତୁ ଷଣ୍ଢକୁ ନ ମାରିଲେ ତ ତାର ରକ୍ତ ମିଳିବ ନାହିଁ । ପୁଣି ରାଜାପୁଅ ତ ତା ଷଣ୍ଢକୁ ଅତି ଭଲ ପାଆନ୍ତି । ତେଣୁ ରାଜା ଷଣ୍ଢକୁ ମାରିବା କଥାରେ ରାଜି ହେଲେ ନାହିଁ । ଏଣେ ରାଣୀଙ୍କ ଦେହ ଦିନକୁ ଦିନ ବେଶୀ ଖରାପ ହେବାକୁ ଲାଗିଲା । ଶେଷରେ ରାଜା ଆଉ କୌଣସି ଉପାୟ ନ ଦେଖି ରାଜାପୁଅର ଷଣ୍ଢକୁ ମାରି ତା ରକ୍ତ ଆଣି ରାଣୀଙ୍କୁ ଦେବାକୁ ରାଜିହେଲେ ।

ରାଜାପୁଅ ତା ଷଣ୍ଢ ମରାହେବା କଥା ଶୁଣି ଭାରି ମନ ଦୁଃଖରେ ଥାଏ । ସେ ଷଣ୍ଢ ପାଖରେ ମନ ମାରି ଘୁରି ବୁଲୁଥାଏ । ଷଣ୍ଢ

Digitized by srujanika@gmail.com

ରାଜାପୁଅକୁ ମନମାରି ବୁଲୁଥିବା ଦେଖି ପଚାରିଲା, ତାର କ'ଣ ହୋଇଛି । ରାଜାପୁଅ ତାକୁ ସବୁ କଥା କହିଲା । ଷଣ୍ଢ ତାକୁ କହିଲା, "ତମେ ଜମା ମନ କଷ୍ଟ କରନାହିଁ । ମୋତେ କେହି ମାରି ପାରିବେ ନାହିଁ ।"

ପରଦିନ ଷଣ୍ଢକୁ ମାରିବା କଥା । ରାଣୀ ସେ ଦିନ ମନ ଖୁସିରେ ଉଠି ଷଣ୍ଢ କେମିତି ମରି ହେବ ବୋଲି ଅନାଇଛନ୍ତି । ଷଣ୍ଢକୁ ମରି-ହେବ ବୋଲି ପଡ଼ିଆକୁ ଅଣାଗଲା । ରାଜାପୁଅ ବି ତା ସାଙ୍ଗରେ ଥାଏ । ଏହି ସମୟରେ ଷଣ୍ଢ ରାଜାପୁଅକୁ ଚୁପ୍ ଚୁପ୍ କହିଲା, "ତମେ ମୋ ପିଠି ଉପରକୁ ଡେଇଁପଡ଼, ଦେଖିବା ତମେ କେମିତିକା ଘୋଡସବାର ।" ରାଜାପୁଅ ଏହା ଶୁଣିବା ସାଙ୍ଗେ ସାଙ୍ଗେ ଷଣ୍ଢ ପିଠି ଉପରକୁ ଡେଇଁ ତା ଶିଙ୍ଗ ଦୁଇଟାକୁ ଜୋର୍‌ରେ ଜାପଟି ଧରିଲା । ଷଣ୍ଢ ହୁଁ ହୁଁ, ସମସ୍ତେ ହିରିଆଡେ ଅନାଇଁଛନ୍ତି, ରାଣୀଙ୍କ ଉପରକୁ ଡେଇଁପଡ଼ି, ତାଙ୍କୁ ମାରି ପକାଇଦେଇ, ସାଏଁ କରି ଡେଇଁ ଡେଇଁ ଚାଲିଗଲା । ଏମିତି ସେ କେତେ ଦିନ, କେତେ ରାତି, କେତେ ବଣ ପାହାଡ଼, ନଈ, ଗାଁ ଗଣ୍ଡା, ସହର ଟପି ଚାଲିଲା ।

ଏମିତି ବହୁତ ବାଟ ଯିବା ପରେ ଷଣ୍ଢ ସେଇଠୁ ତା ଯିବା ବନ୍ଦ କଲା । ତା ପରେ ସେ ରାଜାପୁଅକୁ କହିଲା, "ଏଥର ଆମକୁ ବହୁତ ବାଟ ଯିବାକୁ ପଡ଼ିବ ଏବଂ ବାଟରେ ବହୁ ଅସୁବିଧା ମଧ ଭୋଗିବାକୁ ପଡ଼ିବ । ତେଣୁ ତମେ ଗୋଟିଏ କାମ କର । ମୋ ବାଆଁ କାନ ଭିତରେ ହାତ ପୁରାଅ । ତମେ ଗୋଟିଏ ରୁମାଲ ତା ଭିତରୁ ପାଇବ । ସେ ରୁମାଲକୁ ବିଛାଇ ଦେଲେ ତା ଉପରେ ସବୁ ପ୍ରକାର ରାଜାଙ୍କ ଖାଇବା ଜିନିଷ ଆସି ଉହ୍ଲପିବ । ତମେ ତାକୁ ଖାଇ ଆଗ ଭୋକ ଶୋଷ ମେଣ୍ଟାଅ, ତା ପରେ ଯାଇ ଯୁଆଡ଼େ

Digitized by srujanika@gmail.com

ଯିବ। ।” ଷଣ୍ଢ କହିବା ଅନୁସାରେ ରାଜପୁଅ ରୁମାଲ ବାହାର କରି ମନ ଭରି କରି ଖାଇବା ଶେଷ କଲା । ତା'ପରେ ରୁମାଲକୁ ଝାଡ଼ି-ଝୁଡ଼ି ଦେଇ ପୁଣି ଷଣ୍ଢର କାନରେ ପୂରାଇ ଦେଲା । ଷଣ୍ଢ ପୁଣି କହିଲା, "ଏଥର ମୋ ଡାହାଣ କାନରେ ହାତ ପୂରାଅ । ତା ଭିତରୁ ତମେ ଖଣ୍ଡେ ଶ୍ରେଷ୍ଠ ବାଡ଼ି ପାଇବ । ସେ ବାଡ଼ିକୁ ନେଇ ତମ ମୁଣ୍ଡ ଉପରେ ତିନଥର ଘୁରାଇଲେ ସେଇଟା ଗୋଟାଏ ଖଣ୍ଡା ହୋଇଯିବ ଏବଂ ତମ ଦେହରେ ହଜାରେ ଲୋକଙ୍କର ବଳ ଆସିଯିବ । ଆଉ ତମେ ଯେତେବେଳେ ଖଣ୍ଡା ଦରକାର କରୁ ନ ଥିବ,ସେତେବେଳେ ସେ ଖଣ୍ଡାଟି ପୁଣି ଶ୍ରେଷ୍ଠ ବାଡ଼ି ହୋଇଯିବ ।" ତା ପରେ ଷଣ୍ଢ କହିଲା, ଆସନ୍ତା କାଲି ଠିକ୍ ଦିନ ବାରଟା ସମୟରେ ମୋତେ ଗୋଟିଏ ଅତି ବଳୁଆ ଷଣ୍ଢ ସହିତ ଲଢ଼େଇ କରିବାକୁ ହେବ ।

ଷଣ୍ଢ ସେଇଠୁ ପୁଣି ରାଜକୁମାରକୁ ପିଠିରେ ବସାଇ ଚାଲିବାକୁ ଆରମ୍ଭ କଲା । କେତେ ବଣ, ପାହାଡ଼, ନଈ, ସହର ଡେଇଁ ଡେଇଁ ସେ ଆସି ସେଇ ବଳୁଆ ଷଣ୍ଢ ପାଖରେ ପହଞ୍ଚିଲା । ଦୁଇ ଷଣ୍ଢ ଭୀଷଣ ଯୁଦ୍ଧ କଲେ । ସେମିତିଆ ଯୁଦ୍ଧ ପୃଥିବୀରେ କେବେ କାହିଁ ଦେଖା ନ ଥିଲା । ତାଙ୍କ ଯୁଦ୍ଧରେ କେତେ ଗାଁ ଗଣ୍ଡା ଧୂଳି ହେଲା, କେତେ ପାହାଡ଼ ଭାଙ୍ଗି ନଈ ହେଲା, କେତେ ନଈ ବି ପାହାଡ଼ ହୋଇଗଲା, ତାର ଠିକ ଠିକଣା ରହିଲା ନାହିଁ । ବହୁତ ଦିନ ଯୁଦ୍ଧ ପରେ ଶେଷରେ ରାଜକୁମାରର ଷଣ୍ଢ ଆଉ ବଳୁଆ ଷଣ୍ଢକୁ ମାରି ତା ରକ୍ତ ପିଇଲା । ତାପରେ ସେମାନେ ସେଠି ଦିନେ ବିଶ୍ରାମ କଲେ । ରାଜକୁମାର ଷଣ୍ଢ କାନରୁ ରୁମାଲ ବାହାର କରି ପେଟପୂରା ଖାଇଲା । ଷଣ୍ଢ ରାଜକୁମାରକୁ କହିଲା, "କାଲି ଠିକ୍ ଦିନ ବାରଟା ବେଳେ ଏଇ ଯେଉଁ ଷଣ୍ଢକୁ ମାରିଲି, ତା ଭାଇ ସହିତ ମୋତେ ଯୁଦ୍ଧ କରିବାକୁ ପଡ଼ିବ । ଭୀଷଣ ଯୁଦ୍ଧ ହେବ ।"

Digitized by srujanika@gmail.com

ସେଇଠୁ ସେମାନେ ପୁଣି ବଣ ଜଙ୍ଗଲ ଡେଇଁ ଡେଇଁ ଯାଇ ବଳୁଆ ଷଣ୍ଢର ଭାଇ ପାଖରେ ପହଞ୍ଚିଲେ । ଠିକ୍ ଦିନ ବାରଟା ବେଳେ ଯୁଦ୍ଧ ଆରମ୍ଭ ହେଲା । ଏମିତିଆ ଯୁଦ୍ଧ ଆଉ କେବେ ବି ପୃଥିବୀରେ ହୋଇ ନ ଥିଲା । ଭୀଷଣ ଯୁଦ୍ଧ ଦୁଇ ଷଣ୍ଢଙ୍କ ଭିତରେ ହେଲା । କେତେ ବଣ ଜଙ୍ଗଲ ଭାଙ୍ଗି ପାହାଡ଼ ହେଲା, କେତେ ପାହାଡ଼ ଭାଙ୍ଗି ଝରଣା ହେଲା, କେତେ ରାସ୍ତା ଘାଟ ଭାଙ୍ଗି ଖାଲ ଢିପ ହେଲା, ତାର ଠିକ ଠିକଣା ରହିଲା ନାହିଁ । ଶେଷରେ ରାଜକୁମାରର ଷଣ୍ଢ ବଳୁଆ ଷଣ୍ଢର ଭାଇକୁ ମାରି ତା ରକ୍ତ ପିଇଲା । ରାଜକୁମାର ପୁଣି ଷଣ୍ଢ କାନରୁ ରୁମାଲ ବାହାରି କରି ପେଟପୁରି ଖାଇଲା । ତାପରେ ଷଣ୍ଢ କହିଲା, "କାଲି ପୁଣି ମୋତେ ବଳୁଆ ଷଣ୍ଢର ଆଉ ଗୋଟିଏ ଭାଇ ସାଙ୍ଗେ ଯୁଦ୍ଧ କରିବାକୁ ହେବ । ଏଇ ଭାଇ ଆଗ ଦୁଇ ଭାଇଙ୍କ ଅପେକ୍ଷା ଢେର ବଳୁଆ, ଢେର ସାହସୀ, ସେଇଥିପାଇଁ ସମସ୍ତେ ତାକୁ 'ବଣର କାଳିଆ ଷଣ୍ଢ' ବୋଲି ଡାକନ୍ତି । କିନ୍ତୁ ଏଇ ଯୁଦ୍ଧରେ ମୁଁ ହାରିଯିବି ଓ ସେ ମୋତେ ମାରି ପକାଇବ । ତେଣୁ ତମେ, ମୁଁ ମଲାପରେ, ମୋ କାନରୁ ରୁମାଲ କାଢ଼ିନେବ । ସେଇ ରୁମାଲ ହାରା ତମର ଭୋକ ଶୋଷ ଘୁଞ୍ଚିବ । ଆଉ ତମେ ଗୋଟ ବାଡ଼ିଟି ମଧ୍ୟ ମୋ କାନରୁ ନେଇଯିବ, ଯାହାଦ୍ୱାରା ତମେ ଯେ କୌଣସି ବଳୁଆ ଶତ୍ରୁକୁ ବି ହରେଇ ପାରିବ । ତା ଛଡ଼ା ତମେ ତମ ଛୁରୀରେ ମୋ ପିଠିପଟୁ ଓ ପେଟପଟୁ ଦୁଇଖଣ୍ଡ ଚମଡ଼ା କାଟି ସେଥିରେ ବେଲ୍ଟ ତିଆରି କରି ଅଣ୍ଟାରେ ବାନ୍ଧିବ । ଯେ ପର୍ଯ୍ୟନ୍ତ ତମେ ସେ ବେଲ୍ଟ ପିନ୍ଧିଥିବ ସେପର୍ଯ୍ୟନ୍ତ ତମକୁ କେହି ମାରି ପାରିବେ ନାହିଁ ।

ରାଜାପୁଅ ଷଣ୍ଢର କଥା ଶୁଣି ଭାରି ମନଦୁଃଖ କଲା । ତଥାପି ସେ ଷଣ୍ଢ ପିଠି ଉପରେ ବସି ପୁଣି ବଣ, ଜଙ୍ଗଲ, ନଈ, ପାହାଡ଼

Digitized by srujanika@gmail.com

ଯେଉଁ ଯେଉଁ ଯାଇ କଳା ଷଣ୍ଢ ପାଖରେ ପହଞ୍ଚିଲେ । ତା'ପର ଦିନ ଠିକ୍ ଦିନ ବାରଟାବେଳେ ରାଜାପୁଅର ଷଣ୍ଢ ଓ କଳା ଷଣ୍ଢ ଭିତରେ ଘମାଘୋଟ ଯୁଦ୍ଧ ଲାଗିଗଲା । କେତେ ବଣ ଜଙ୍ଗଲ ଭାଙ୍ଗି ପାହାଡ଼ ହେଲା । କେତେ ପାହାଡ଼ ଭାଙ୍ଗି ଝରଣା ହେଲା, କେତେ ଗଛପତ୍ର ଭାଙ୍ଗି ଖାଲ ଢିପ ହେଲା, ତାର ଠିକ ଠିକଣା ରହିଲା ନାହିଁ । କିନ୍ତୁ ଯୁଦ୍ଧ ଶେଷରେ କଳା ଷଣ୍ଢ ରାଜକୁମାରର ଷଣ୍ଢକୁ ମାରି ତା ରକ୍ତ ପିଇଲା । ରାଜକୁମାରର ଷଣ୍ଢ ମରିଯିବାରୁ ସେ ଏତେ ମନଦୁଃଖ କଲା ଯେ ସେ ଦୁଇଦିନ ପର୍ଯ୍ୟନ୍ତ ତା ପିଠି ଉପରୁ ଉଠିଲା ନାହିଁକି କିଛି ଖାଇଲା ନାହିଁ, ଖାଲି କାନ୍ଦିଲା ।

ତାପରେ ମନକୁ ବୁଝେଇ ସେ ଉଠିଲା ଏବଂ ତା ରୁମାଲ ବିଛାଇ ଆଗ ପେଟ ପୁରା ଭଲକରି ଖାଇଲା, ତାପରେ ସେ ଷଣ୍ଢ ପେଟରୁ ଓ ପିଠିରୁ ଚମଡ଼ା କାଢ଼ି ଖଣ୍ଡେ ବେଲ୍ଟ ତିଆରି କରି ତାକୁ ଅଣ୍ଟାରେ ବାନ୍ଧି, ରୁମାଲ ଓ ପେଟ ବାଡ଼ିଟି ଧରି ତା ଭାଗ୍ୟ ଖୋଜିବାକୁ ବାହାରି ପଡ଼ିଲା । ଏମିତି ସେ ତିନିଦିନ ତିନିରାତି ଚାଲି ଚାଲି ଯାଇ ଜଣେ ଲୋକ ଘରେ ପହଞ୍ଚିଲା । ରାଜାପୁଅ ସେ ଲୋକକୁ କହିଲା,"ତମେ ମୋତେ କିଛି କାମ କରିବାକୁ ଦେବକି ?" ସେ ଲୋକ କହିଲା "ମୁଁ ତ ତୋରି ପରି ଗୋଟାଏ ପିଲା ମୋ ଗୋରୁ ଛେଳି ଜଗାରଖା କରିବାକୁ ଖୋଜୁଥିଲି ।" ରାଜାପୁଅ ପଚାରିଲା "ତମର କେତେ ଗୋରୁ ଅଛନ୍ତି, ଆଉ ତମେ ମୋତେ କେତେ ମଜୁରି ଦେବ ?" ସେଇଠୁ ସେ ଲୋକ କହିଲା, "ମୋର ତିନୋଟି ଛେଳି, ତିନୋଟି ଗାଈ, ତିନୋଟି ଘୋଡ଼ା ଓ ତିନୋଟି ଗଧ ଅଛନ୍ତି । ସେମାନଙ୍କୁ ଯେଉଁ ପିଲା ଜଗିବ ସେ ତାଙ୍କୁ ନେଇ

Digitized by srujanika@gmail.com

ସହର ବାହାର ବଗିଚାରେ ଚରାଏ । କିନ୍ତୁ ଅସୁବିଧା ହେଉଛି ଯେଉଁ ପିଲା ଜଗିବାକୁ ଯାଏ, ତାକୁ ତିନିଟା ଅସୁର ପ୍ରତିଦିନ ଦୁଧ ଦୁହିଁବାକୁ ଆସି ମାରି ପକାନ୍ତି । ତେଣୁ ତୁ ଯଦି ଗୋରୁ ଜଗିବାକୁ ଯିବାକୁ ଇଚ୍ଛା କରୁ ଏବଂ ସେଠାରୁ ଜୀବନ ନେଇ ଫେରୁ । ତେବେ ତୋର ମଜୁରି ଠିକଣା କରାଯିବ ।" ରାଜପୁଅ ଏଥିରେ ରାଜି ହେଲା ।

ତାପର ଦିନ ବଡ଼ ସକାଳୁ ଉଠି ରାଜପୁଅ ତିନୋଟି ଛେଳି, ତିନୋଟି ଗାଈ, ତିନୋଟି ଘୋଡ଼ା ଓ ତିନୋଟି ଗଧ ନେଇ ସହର ବାହାର ବଗିଚାରେ ଯାଇ ପହଞ୍ଚିଲା । ଠିକ ଦିନ ଦ୍ୱିପ୍ରହରକୁ ସେ ତିନିଟା ଭୟଙ୍କର ରଡ଼ି ଶୁଣିଲା । ସେ ରଡ଼ିରେ ଗଛରୁ ଫଳ ସବୁ ଖସି ପଡ଼ିଲେ । ଗୋରୁମାନଙ୍କର ଶିଙ୍ଗ ସବୁ ହଲିଗଲା, ଆଉ ରାଜପୁଅ ମୁଣ୍ଡର ବାଳ ସବୁ ଡରରେ ଠିଆ ହୋଇଗଲେ । ସେ ଦେଖିଲା ଦୂରରୁ ଗୋଟେ ବିକଟାଳିଆ ତିନିମୁଣ୍ଡିଆ ଅସୁର ତା ଆଡ଼କୁ ମାଡ଼ି ଆସୁଛି । ସେ ଅସୁର ରାଜପୁଅକୁ ପଚାରିଲା, "ତୁ ମୋର ଗୋଟାଏ କାନକୁ ବଡ଼, କିନ୍ତୁ ଦୁଇଟା କାନକୁ ବହୁତ ଛୋଟ, ତେବେ ମୁଁ ତତେ କେମିତି ଖାଇବାକୁ ତୁ ଇଚ୍ଛା କରୁ ?" ରଜାପୁଅ କହିଲା "ମୁଁ ତୋ ସଙ୍ଗେ ଯୁଦ୍ଧ କରିବ ।" ଏଇଆ କହି ସେ ଅସୁର ଆଡ଼କୁ ମାଡ଼ିଯାଇ ତା ଛୋଟ ବାଡ଼ିକୁ ତା ମୁଣ୍ଡ ଉପରେ ତିନିଥର ଘୂରାଇ ଦେଲା । ଦେଖୁ ଦେଖୁ ଛୋଟ ବାଡ଼ିଟା ଗୋଟେ ଖଣ୍ଡା ହୋଇଗଲା ଏବଂ ରାଜପୁଅ ଦିହରେ ହଜାରେ ଲୋକଙ୍କର ବଳ ଆସିଗଲା । ଅସୁର ତାକୁ ଦେଖି ହସି ହସି କହିଲା "ଆଚ୍ଛା ତୁ କିପରି ମରିବୁ ? ତୋତେ ମୁଁ ପଛରୁ ଧରି ଝୁଲେଇ ଝୁଲେଇ ମାରିବ, କି ଖଣ୍ଡାରେ କାଟିଦେବ, କି ତୁ ମଲ୍ଲଯୁଦ୍ଧ କରି ମରିବାକୁ ଇଚ୍ଛା କରୁ ?" ରାଜପୁଅ କହିଲା, "ଆଚ୍ଛା, ତୁ ପାରିବୁ

Digitized by srujanika@gmail.com

ଯଦି ମୋତେ ପଦରୁ ଧରି ଝୁଲେଇ ଝୁଲେଇ ମାର ।" ସେଇଠୁ ସେମାନେ ପ୍ରସ୍ତୁତ ହୋଇଗଲେ । ରାଜାପୁଅ ଅସୁରକୁ ଟେକି ହଲେଇ ହଲେଇ ଏତେ ଜୋରରେ ଭୂଇଁରେ କଚାଡ଼ି ଦେଲା ଯେ ସେ ତା କାନ୍ଧ ପର୍ଯ୍ୟନ୍ତ ମାଟିରେ ପଶିଗଲା । ଅସୁର ସେଇଠୁ ପାଟିକଲା, "ମୋତେ ରକ୍ଷାକର, ରକ୍ଷାକର ।" କିନ୍ତୁ ରଜାପୁଅ ତା କଥା ନ ଶୁଣି ଖଣ୍ଡାରେ ତାକୁ ଦିଖଣ୍ଡ କରିଦେଲା । ସେତେବେଳକୁ ମୁହଁ ସଞ୍ଜ ହେଲାଣି । ରାଜାପୁଅ ସେଇଠୁ ଗୋରୁ, ଛେଳିମାନଙ୍କୁ ଅଡ଼େଇ ଅଡ଼େଇ ଘରକୁ ଆସିଲା । ଗାଈମାନେ ସେଦିନ ଏତେ ଦୁଧ ଦେଲେ ଯେ ଦୁଧ ରଖିବାକୁ ଆଉ ଘରେ ଜାଗା ରହିଲା ନାହିଁ ।

ତାକୁ ଦେଖି ଗାଈବାଲା କହିଲା, "ବଡ଼ ଆଶ୍ଚର୍ଯ୍ୟ କଥା, ଏ ପର୍ଯ୍ୟନ୍ତ ଯେତେ ପିଲା ଗାଈ ନେଇ ଯାଇଛନ୍ତି କେହି ସେଠୁ ଫେରି ଆସି ନାହାନ୍ତି ଅଉ ଘରେ ଗୋଟେ ବୁନ୍ଦା ହେଲେ ଦୁଧ କୌଣସି ଦିନ ତ ହୁଏ ନାହିଁ । ଆଚ୍ଛା, ତୁ କ'ଣ ବଗିଚାରେ କିଛି ଦେଖିବାକୁ ପାଇଲୁ ନାହିଁ ?" ରାଜାପୁଅ କହିଲା "କାହିଁ କିଛି ନାହିଁତ ! ବର୍ତ୍ତମାନ ମୋ ମଜୁରି କଥା କ'ଣ ହେବ ?" ଗାଈବାଲା କହିଲା, "ତୁ ସିନା ଆଜି ବଞ୍ଚି ଆସିଲୁ, କିନ୍ତୁ କାଲି ଆଉ ଫେରି ଆସିବୁ ନାହିଁ । ତେଣୁ କାଲି ପର୍ଯ୍ୟନ୍ତ ଅପେକ୍ଷା କର ।" ରାଜାପୁଅ ସେଥିରେ ରାଜି ହେଲା । ତା ପରଦିନ ବଡ଼ି ଭୋରରୁ ଗାଈବାଲା ରାଜାପୁଅକୁ କହିଲା, "ବୋଧେ ଗୋଟାଏ ଅସୁରର କ'ଣ ଅସୁବିଧା ହୋଇଛି ।" କାରଣ ସେ ସବୁଦିନ ତିନୋଟା ଅସୁରଙ୍କ ରଡ଼ି ଶୁଣେ, କିନ୍ତୁ ଗତ ରାତିରେ ଦୁଇଟା ଅସୁରଙ୍କର ରଡ଼ି ଶୁଣିଥିଲା । ରାଜାପୁଅ କହିଲା "ମୁଁ ସେ ସବୁ କଥା କିଛି ଜାଣିନ ।"

Digitized by srujanika@gmail.com

ତାପରେ ସେ ଜଳଖିଆ ପଣ ଖାଇ ଗାଈ, ଛେଳି, ଘୋଡ଼ା ଓ ଗଧମାନଙ୍କୁ ନେଇ ବଗିଚାରେ ପହଞ୍ଚିଲା । ଦିନ ଦ୍ୱିପ୍ରହର ବେଳକୁ ସେ ହଠାତ୍ ତିନିଟା ଭୟଙ୍କର ରଡ଼ି ଶୁଣିଲା । ସେ ରଡ଼ିରେ ଗଛରୁ ଫଳ ସବୁ ଝଡ଼ିପଡ଼ିଲେ, ଗୋରୁମାନଙ୍କର ଶିଙ୍ଘ ସବୁ ହଲିଗଲା, ଏବଂ ରାଜାପୁଅର ମୁଣ୍ଡ ବାଳ ସବୁ ଠିଆ ହୋଇଗଲା । ରାଜାପୁଅ ଦୂରରୁ ଦେଖିଲା ଗୋଟାଏ ବଳକଟାଳିଆ ଛଅ ମୁଣ୍ଡିଆ ଅସୁର ତା ଆଡ଼କୁ ମାଡ଼ି ଆସୁଛି । ଅସୁର ରଡ଼ି କରି କହିଲା, 'ବୁଝିଲୁ ତୁ ଗତକାଲି ମୋ ଭାଇକୁ ମାରିଛୁ, ଆଜି ତୋତେ ତାର ଫଳ ଭୋଗିବାକୁ ହେବ । କିନ୍ତୁ ତୁ ମୋର ଗୋଟାଏ କଳକୁ ବେଶୀ ହେବୁ ଆଉ ଦୁଇଟା କଳକୁ ବହୁତ ସାନ ହେବୁ । ତେବେ ତୁ କେମିତି ମରିବୁ ?" ରାଜାପୁଅ କହିଲା "ତୁ ମୋ ସାଙ୍ଗରେ ଯୁଦ୍ଧ କର ।" ଏକଥା କହି କହି ସେ ଅସୁର ଆଡ଼କୁ ତାର ଛୋଟ ବାଡ଼ିଟାକୁ ତା ନିଜ ମୁଣ୍ଡ ଉପରେ ତିନିଥର ବୁଲାଇ ମାଡ଼ିଗଲା । ଛୋଟ ବାଡ଼ିଟା ଗୋଟିଏ ଖଣ୍ଡା ହୋଇଗଲା ଆଉ ରାଜାପୁଅ ଦେହରେ ହଜାରେ ଲୋକଙ୍କର ବଳ ବି ଆସିଗଲା । ଅସୁର ତାକୁ ଦେଖି ହସି ହସି କହିଲା 'ଏଥର ମୁଁ ତୋତେ କେମିତି ମାରିବି କହ, ତୋତେ ପଛପଟୁ ବୁଲେଇ ବୁଲେଇ ମାରିବି କି ଖଣ୍ଡାରେ କାଟିକି ମାରିବି କି ତୁ ମୋ ସାଙ୍ଗରେ ମଲ୍ଲଯୁଦ୍ଧ କରି ମରିବୁ ।" ରାଜାପୁଅ କହିଲା, "ପାରିବୁ ଯଦି ମୋତେ ପଛପଟୁ ବୁଲେଇ ମାର ।" ସେଇଠୁ ଦୁହେଁ ଯୁଦ୍ଧ କରିବାକୁ ତିଆରି ହୋଇଗଲେ । ରାଜାପୁଅ ଅସୁରକୁ ଟେକି ବୁଲେଇ ବୁଲେଇ ଏତେ ଜୋରରେ କଚାଡ଼ି ଦେଲା ଯେ ସେ ମାଟିରେ ତା କାନ୍ଧ ପର୍ଯ୍ୟନ୍ତ ପୋତି ହୋଇଗଲା । ଅସୁର ପାଟି କଲା "ମୋତେ ରକ୍ଷାକର ରକ୍ଷାକର" କିନ୍ତୁ ସେ କିଛି ନ ଶୁଣି ତା ଖଣ୍ଡାରେ ତାକୁ ଦି ଗଡ଼ କରିଦେଲା । ସେତେବେଳକୁ ସଞ୍ଜ

Digitized by srujanika@gmail.com

ହେଲଣି । ସେଇଠୁ ରଜାପୁଅ ଗୋରୁମାନଙ୍କୁ ଅଡ଼େଇ ଅଡ଼େଇ ଘରେ ଆସି ପହଞ୍ଚିଲା । ସେଦିନ ଗୋରୁମାନେ ଏତେ ଦୁଧ ଦେଲେ ଯେ ଦୁଧ ରଖିବାକୁ ଘରେ ଜାଗା ନଅଣ୍ଟ ହେଲା । ଗାଈବାଲା ରାଜପୁଅକୁ ଫେରିବାର ଦେଖି ଭାରି ଆଶ୍ଚର୍ଯ୍ୟ ହେଲା ।

ଗାଈବାଲା ରାଜପୁଅକୁ ପଚାରିଲା "ତୁ ବଗିଚାରେ ଆଜି କାହାକୁ ଦେଖିଲୁ ନାହିଁ କି ?" ସେ କହିଲା "ନାହିଁ ନା ତ ! ଆଜି ମୋର ମଜୁରି କଥା କ'ଣ ଠିକ୍ କଲ ?" ଗାଈବାଲା କହିଲା ତୁ ମଜୁରି ପାଇଁ ବ୍ୟସ୍ତ ହୁଅନା, ତୁ ଆଜି ସିନା ଫେରି ଆସିଛୁ, କିନ୍ତୁ ଆସନ୍ତାକାଲି କେବେହେଲେ ଫେରି ଆସିବୁ ନାହିଁ । ତୁ କାଲି ପର୍ଯ୍ୟନ୍ତ ଅପେକ୍ଷା କର ।" ରାଜପୁଅ ରାଜି ହୋଇ ଶୋଇବାକୁ ଗଲା ।

ତା ପରଦିନ ସକାଳୁ ଗାଈବାଲା ରାଜପୁଅକୁ କହିଲା "ଦୁଇ ଦୁଇଟା ଅସୁରଙ୍କର କ'ଣ ହେଲା କେଜାଣି; ମୁଁ ତ କାଲି ରାତିରେ ଗୋଟାଏ ଅସୁରର ରଡ଼ି ଶୁଣିଲି ।" ରାଜପୁଅ କହିଲା "କେଜାଣି ହୋଇଥିବ ।" ତାପରେ ସେ ସକାଳୁ ଜଳଖିଆ ଖାଇ ଗାଈ, ଛେଳି, ଘୋଡ଼ା ଓ ଗଧମାନଙ୍କୁ ନେଇ ବଗିଚାକୁ ବାହାରିଲା । ଠିକ୍ ଦିନ ବାରଟାବେଳେ ସେ ପୁଣି ପୂର୍ବଦିନ ପରି ତିନିଟା ଅତି ଭୟଙ୍କର ରଡ଼ି ଶୁଣିବାକୁ ପାଇଲା । ସେ ଦେଖିଲା ଗୋଟାଏ ଅତି ବିକଟାଳ, ଭୟଙ୍କରିଆ ବାରମୁଣ୍ଡିଆ ଅସୁର ତା ଆଡ଼କୁ ମାଡ଼ି ଆସୁଛି । ଅସୁର ତାକୁ କହିଲା "ତୁ ପାଜି, ମୋର ଦୁଇ ଭାଇଙ୍କୁ ମାରିଛୁ, ଆଜି ମୁଁ ତୋତେ ନ ମାରି ଛାଡ଼ୁନି । ତୁ ମୋର ଗୋଟାଏ ଜଣକୁ ସିନା ବଡ଼ କିନ୍ତୁ ଦୁଇଟା ଜଣଙ୍କୁ ବହୁତ ସାନ । ତତେ ମୁଁ କ'ଣ କରିବ କହ ।" ରାଜପୁଅ କହିଲା "ମୋ ସାଙ୍ଗେ

Digitized by srujanika@gmail.com

ଯୁଦ୍ଧ କର ।" ଏଇଆ କହି ସେ ତା ଗ୍ଲେଟ ବାଡ଼ିକୁ ତା ମୁଣ୍ଡ ଉପରେ ତିନଥର ବୁଲାଇ ଅସୁର ଆଡ଼କୁ ମାଡ଼ିଗଲା । ଗ୍ଲେଟ ବାଡ଼ିଟା ସାଙ୍ଗେ ସାଙ୍ଗେ ଗୋଟାଏ ଖଣ୍ଡା ହୋଇଗଲା ଆଉ ରାଜାପୁଅ ଦେହରେ ହଜାରେ ଲୋକଙ୍କର ବଳ ଆସିଗଲା । ଅସୁର ତାକୁ ଦେଖି ହସି ହସି ତା ଭାଇମାନଙ୍କ ପରି ପଚାରିଲା "ତୁ କେମିତି ମରିବୁ ? ତୋତେ ପଚ୍ଛପଟୁ ଧରି ବୁଲେଇ ବୁଲେଇ ମାରିବି କି ଖଣ୍ଡାରେ ହାଣିଦେବି; କି ମୋ ସାଙ୍ଗରେ ମଲ୍ଲଯୁଦ୍ଧ କରି ମରିବୁ ।" ରାଜାପୁଅ କହିଲା "ମୋ ସାଙ୍ଗେ ଯୁଦ୍ଧ କର ।" ସେଇଠୁ ଦୁହେଁ ରେଡ଼ି ହୋଇଗଲେ । ରାଜାପୁଅ ଏତେବଡ଼ ଅସୁରଟାକୁ ତଳୁ ଟେକି ଘୂରାଇ ଘୂରାଇ ତଳେ ଏମିତି କଚାଡ଼ି ଦେଲା ଯେ ସେ ତା କାନ୍ଧ ପର୍ଯ୍ୟନ୍ତ ପୋତି ହୋଇଗଲା । ସେଇଠୁ ରାଜାପୁଅ ତା ଖଣ୍ଡାରେ ତା ମୁଣ୍ଡ କାଟିଦେଲା । ଅସୁର ମଲା, ସେତେବେଳକୁ ସଞ୍ଜ ହେଲାଣି, ସେ ଗୋରୁମାନଙ୍କୁ ଅଡ଼େଇ ଅଡ଼େଇ, ଗୀତ ଗାଇ ଗାଇ ଆସି ଘରେ ପହଞ୍ଚିଲା । ସେଦିନ ଗାଈମାନେ ଏତେ ଦୁଧ ଦେଲେ ଯେ ସେ ଦୁଧରେ ସେଠାରେ ଗୋଟାଏ ନଈ ହୋଇଗଲା ।

ଗାଈବାଲା ଆଶ୍ଚର୍ଯ୍ୟରେ ପଚାରିଲା "ଆଜ ବି ତୁ ବଗିଚାରେ କାହାକୁ ଭେଟିଲୁ ନାହିଁ ।" ରାଜାପୁଅ କହିଲା "କାହିଁ ମୋ ଛଡ଼ା ତ କେହି ନ ଥିଲେ । ଆଚ୍ଛା ବର୍ତ୍ତମାନ ମୋର ମଜୁରି କଥା କାହିଁ ନା' ତ ! କଣ ଦେବ ?" ଗାଈବାଲା କହିଲା ତୁ ତ ଭାରି ବୁଦ୍ଧିଆ ଅଛୁ, ତୁ ଯାହା ମାଗିବୁ ମୁଁ ତତେ ତା ଦେବି ।" ତା ପରଦିନ ସକାଳୁ ଗାଈବାଲା ରାଜାପୁଅକୁ କହିଲା "ଅସୁରମାନଙ୍କର କ'ଣ ହେଲା କେଜାଣି କାଲି ରାତିରେ ତ ମୁଁ କାହାରି ରଡ଼ି ଶୁଣିବାକୁ ପାଇଲି ନାହିଁ ।" ରାଜାପୁଅ କହିଲା "କେଜାଣି କ'ଣ ହୋଇଥିବ, ସେମାନଙ୍କ ଦେହ

Digitized by srujanika@gmail.com

ଖରାପ ହୋଇଥିବ ।" ତାପରେ ଗାଈବାଲା କହିଲା "ତୁ ଆଜି ଗୋଟାଏ ଦିନ ଗୋରୁମାନଙ୍କୁ ଜଗିଥା, ମୁଁ ଟିକେ ସହରକୁ ଯୁଦ୍ଧ ଦେଖିବାକୁ ଯିବି । ରାଜପୁଅ ପଚାରିଲା କି ଯୁଦ୍ଧ ?" ସେ କହିଲା "କାହିଁ ତୁ କିଛି ଶୁଣିନୁ କି ? ଆଜିପରା ରାଜା ତାଙ୍କ ଡ୍ରାଗନ ସାଙ୍ଗରେ ରାଜ୍ୟର ବଡ଼ ବଡ଼ ଯୋଦ୍ଧାମାନଙ୍କୁ ଯୁଦ୍ଧ କରିବାକୁ ଡାକିଛନ୍ତି । ଯେଉଁ ଯୋଦ୍ଧା ଡ୍ରାଗନକୁ ମାରିବ ସେ ରାଜାଝିଅକୁ ବାହା ହେବ । ରାଜପୁଅ କହିଲା "ବାଃ ବଢ଼ିଆ ତ !"

ରାଜପୁଅ ତାପରେ ଗୋରୁମାନଙ୍କୁ ନେଇ ସେଦିନ ବଗିଚାକୁ ଗଲା । ବାଟରେ ଦେଖିଲା କାହିଁ କେତେଆଡ଼ୁ କେତେ ଲୋକ ଯୁଦ୍ଧ ଦେଖିବାକୁ ନଅରକୁ ଯାଉଛନ୍ତି । କିଏ ଗାଡ଼ିରେ ଯାଉଛି, କିଏ ଘୋଡ଼ାରେ, କିଏ ଗଧ ପିଠିରେ, କିଏ ବା ପାଦରେ ଚାଲି ଚାଲି ଯାଉଛନ୍ତି । ହଠାତ ଜଣେ ଲୋକ ରାଜପୁଅକୁ କହିଲା "ତମେ କାହିଁକି ଯୁଦ୍ଧ ଦେଖିବାକୁ ଯାଉନ ?" ରାଜପୁଅ କହିଲା "ହେଃ ମୋ ପରି ଲୋକଟାଏ ସେଠିକି କାହିଁକି ଯିବ ?" କିନ୍ତୁ ଏକଥା କହିଲା ଯିନା, ଯେମିତି ସମସ୍ତେ ଯାଇ ସାରିଲେ ସେ ଗାଈବାଲାର ସବୁଠୁ ସୁନ୍ଦରିଆ ଆଉ ବଳିଆ କଳା ଘୋଡ଼ାଟିକୁ ବାଛି ତାର ଲଗାମ ଭିଡ଼ିଲା । ଗାଈବାଲା ଘରୁ ସବୁଠୁଁ ସୁନ୍ଦରିଆ ପୋଷାକ ବାହାରି କରି ପିନ୍ଧି ରାଜନଅରକୁ ଘୋଡ଼ା ଛୁଟାଇ ଦେଲା ।

ନଅରରେ ପହଞ୍ଚି ସେ ଦେଖିଲା ରାଜାଝିଅକୁ ଘେରି ରାଜ୍ୟସାରା ଲୋକ ଜମା ହୋଇଛନ୍ତି । ରାଜାଝିଅକୁ ଦେଖି ସେ ଭାବିଲା ଏମିତି ସୁନ୍ଦରିଆ ଝିଅ ତା ଜୀବନରେ ସେ କେଉଁଠି ହେଲେ ଦେଖିନି । ତାପରେ ସେ ଯାଇ ଯୁଦ୍ଧ ସ୍ଥାନରେ ପହଞ୍ଚି ଦେଖିଲା ଯେ ଯୋଦ୍ଧା-ମାନେ ଡ୍ରାଗନ ପାଖକୁ ଜଣ ଜଣ କରି ଯାଉଛନ୍ତି, କିନ୍ତୁ ଡ୍ରାଗନ

Digitized by srujanika@gmail.com

ଯେମିତି ତାର ବାରଟା ମୁଣ୍ଡ କାଟି ଗୋଡ଼େଇ ଆସୁଛି । ସମସ୍ତେ ଭୟରେ ପଳାଇ ଆସୁଛନ୍ତି । କେହିହେଲେ ତା ସାଙ୍ଗରେ ଯୁଦ୍ଧ କରିବାକୁ ସାହାସ କଲେ ନାହିଁ । ସେଇଠୁ ରାଜାଝିଅ କହିଲା, "କ'ଣ ରାଜ୍ୟରେ କେହି ଜଣେ ହେଲେ ନାହାନ୍ତି ଯେ କି ଡ୍ରାଗନକୁ ମାରି ପାରିବ ?" ତା କଥା ଶୁଣି କେହି ଜଣେ ହେଲେ ଆସିଲେ ନାହିଁ । ରାଜାପୁଅ ଏକଥା ଦେଖି ତା ପାଖରେ ତା ଷଣ୍ଢର ଯେଉଁ ବେଲ୍ଟ ଥିଲା ତାକୁ କାଢି ଅଣ୍ଟାରେ ବାନ୍ଧିଲା. ଆଉ ତା ସ୍ପ୍ରେଟ ବାଡ଼ିକୁ ତିନିଥର ତା ମୁଣ୍ଡ ଉପରେ ବୁଲାଇ ଦେଲା । ସ୍ପ୍ରେଟ ବାଡ଼ିଟା ଖଣ୍ଡା ହୋଇଗଲା ଓ ରାଜାପୁଅ ଦେହରେ ଦଶ ହଜାରେ ଲୋକଙ୍କର ବଳ ବଢ଼ିଗଲା । ତାପରେ ସେ ଡ୍ରାଗନ ସହିତ ଯୁଦ୍ଧ କରିବାକୁ ଲାଗିଁ ପଡ଼ିଲା । ବେଶ୍ କିଛି ସମୟ ଯୁଦ୍ଧ କରିବା ପରେ ସେ ଡ୍ରାଗନକୁ ମାରିଲା । ରାଜ୍ୟସାରା ଲୋକମାନେ ଏକବାରେ କଠ ହୋଇଗଲେ । ସେମାନେ ଭାବିଲେ ଯେ ଏ ଅଜଣା ଅଚିହ୍ନା ବୀରଟି କିଏ, ଯେ ଏଡ଼େ ବଡ଼ ଡ୍ରାଗନଟାକୁ ମାରି ପାରିଲା । ତାପରେ ସେ ଯେଉଁ ଘୋଡାରେ ଆସିଥିଲା ସେଇ ଘୋଡ଼ା ଝପଟାଇ ସେଠାରୁ ପଳାଇଗଲା । କିନ୍ତୁ ସେ ଗଲାବେଳେ ତା ଗୋଡ଼ରୁ ପଟେ ଜୋତା ସେଠି ପଡ଼ିଗଲା । ଜଣେ ଯୋଦ୍ଧା ତାପରେ ସେ ଡ୍ରାଗନର ମୁଣ୍ଡ ସବୁ ଗୋଟେଇ ରାଜାଙ୍କୁ ଯାଇ କହିଲା ଯେ ଡ୍ରାଗନକୁ ସେ ନିଜେ ମାରିଛି । ତେଣୁ ସେ ରାଜାଝିଅକୁ ବାହାହେବ । କିନ୍ତୁ ରାଜଝିଅ ରାଜାପୁଅର ଜୋତା ପଟେ ଗୋଟେଇ ନେଇ ସେ ଯୋଦ୍ଧା ଗୋଡ଼ରେ ପୁରାଇଲା ବେଳକୁ ସେଇଟା ତା ଗୋଡ଼ରେ ମୋଟେ ପଶିଲା ନାହିଁ । ସେଇଠୁ ରାଜାଝିଅ କହିଲା ଯାହା ଗୋଡକୁ ଏ ଜୋତା ପଟକ ହେବ ତାକୁଇ ସେ ବାହାହେବ, ଆଉ କାହାକୁ ନୁହେଁ ।

Digitized by srujanika@gmail.com

ଏଆଡେ ରାଜାପୁଅ କ'ଣ କରନ୍ତି ନା ନଅରରୁ ଫେରି ତା ଲୁଗାପଟା ବଦଳାଇ ଘୋଡ଼ାକୁ ଓ ଗୋରୁମାନଙ୍କୁ ଗାଈବାଳ ଫେରିବା ପୂର୍ବରୁ ଘରକୁ ଆଣି ବାନ୍ଧିଦେଲା । ତାପରେ ଗାଈବାଳ ନଅରରୁ ଫେରି ରାଜାପୁଅ ଆଗରେ ସବୁ କଥା କହିଲା । ରାଜାପୁଅ ତ ସବୁ ଜାଣିଛି, ସେ କହିଲା "ଭାରି ଆଶ୍ଚର୍ଯ୍ୟ କଥା ତ ! ସେ ଅଜଣା ଲୋକଟା ଗଲା କୁଆଡେ ?" ଗାଈବାଳ ବି କହିଲା, "ହଁ ଭାରି ଆଶ୍ଚର୍ଯ୍ୟ କଥା । କୁଆଡ଼େ ଗଲା କେଜାଣି ?"

ଏଣେ ରାଜା ଆଦେଶ ଦେଲେ ଯେ ରାଜ୍ୟରେ ଯେତେ ଲୋକ ଅଛନ୍ତି ସମସ୍ତେ ଆସି ଥରେ ଥରେ ସେ ଝଟିକିଆ ଜୋତାରେ ଗୋଡ଼ ପୂରାଇ ମାପିବେ । ଯାହା ଗୋଡ଼କୁ ସେ ଜୋତା ହେବ ଏବଂ ଯାହାର ଆରପଟକ ବି ଥିବ ସେ ରାଜାଝିଅକୁ ବାହା ହେବ । ଗୋଟାଏ ଦିନ ଠିକ୍ କରିଦେଲା । ସମସ୍ତେ ଗଲେ ଗୋଡ଼ ମାପିବାକୁ । ସମସ୍ତଙ୍କର ଲୋଭ ରାଜାଝିଅକୁ ବାହା ହବାପାଇଁ । ସେଦିନ ବି ରାଜାପୁଅ ଗୋରୁ ନେଇ ବଣିକୁ ଯାଉଥାଏ । ସେ ଦେଖିଲା ବାଟରେ ଲୋକମାନେ ଧାଡ଼ି ଧାଡ଼ି ହୋଇ ଗାଡ଼ି, ଘୋଡ଼ା ଗଧରେ ବସି ଚାଲିଛନ୍ତି । ଜଣେ ଲୋକ ତା'କୁ କହିଲା "କାହିଁ ତମେ ଆସୁନ ତମ ଗୋଡ଼ ମାପିବାକୁ ।" ରାଜାପୁଅ କହିଲା "ହେଃ ମୋପରି ଲୋକ ଗୋଟେ ସେଠିକି କାହିଁକି ଯିବ ?" କିନ୍ତୁ ଯେତେବେଳେ ସମସ୍ତେ ଚାଲିଗଲେ ଗୋଟିଏ ଅପରିଚ୍ଛନିଆ ବୁଢ଼ାଟିଏ ଅଣ୍ଡ ଛୁଣ୍ଡା ଲେଙ୍ଗଡ଼ା ପିନ୍ଧି ସେ ବାଟେ ଯାଉଥିଲା । ରାଜାପୁଅ ତାକୁ ଡାକି କହିଲା "ତମେ ମୋ ଜୋତା ପୋଷାକ ମତେ ଦିଅ ।" ସେ ବୁଢ଼ା ରାଜାପୁଅ କଥା ଶୁଣି ଭାରି ରାଗିଗଲା । ସେ କହିଲା "କ'ଣ ମୋ ସାଙ୍ଗରେ ଥଟା ଖେଳୁଛୁ ? ତୋ କଥା

Digitized by srujanika@gmail.com

ତୁ ବୁଝ୍, ମୋ ଲୁଗାପଟାରୁ ତୁ କ'ଣ ପାଇବୁ ?" ରାଜପୁଅ କିନ୍ତୁ ତାକୁ ଛାଡ଼ିଲା ନାହିଁ । ଶେଷରେ ଦୁହେଁ ପୋଷାକ ବଦଳେଇଲେ ।

ତାପରେ ରାଜପୁଅ ରାଜନଅରକୁ ବାହାରିଲା ସେଇ ଛିଣ୍ଡା ପୋଷାକ ପିନ୍ଧି, ଆଉ ଗୋଟେ ଲମ୍ବା ବାଡ଼ି ହାତରେ ଧରି । ନଅରରେ ଦେଖିଲା କେଳକୁ ସମସ୍ତେ ଜୋତା ଭିତରେ ଗୋଡ଼ ପୂରାଇ ପାଦ ମାପୁଛନ୍ତି. କେତେକ ତାଙ୍କ ଗୋଡ଼ ଜୋତା ଭିତରେ ପଶିବ ବୋଲି ପାଦରୁ ମଧ୍ୟ ଖଣ୍ଡେ ଖଣ୍ଡେ କାଟି ପକାଇଛନ୍ତି । କିନ୍ତୁ ଯେତେ ଯାହା କଲେ ବି ଜୋତା କାହା ଗୋଡ଼କୁ ହେଉ ନ ଥାଏ । ରାଜାଝିଅ ବଡ଼ ମନଦୁଃଖରେ ଥାଏ । ଶେଷରେ ଏଇ ଛିଣ୍ଡା ପୋଷାକ ପିନ୍ଧା, ଅପରିଷ୍କାର ପିଲାଟା ସମସ୍ତଙ୍କୁ ଠେଲାଠେଲି ଆଗକୁ ଗଲା ତା ପାଦ ମାପିବାକୁ । ତାକୁ ଦେଖି ସମସ୍ତେ ହସି ହସି ଗଡ଼ିଗଲେ । ଜଣେ କହିଲା "ବଡ଼ ବଡ଼ ଗଲେ ପଥର ଫାଟି, ସାନ ବାହାରିଲେ କେସର ବାଟି ।" ସେ କିନ୍ତୁ କାହା କଥାକୁ କାନ ନ ଦେଇ ଆଗକୁ ଗଲା । ରାଜାଝିଅ ତାକୁ ଦେଖି ଡାକିଲା ପାଦ ମାପିବାକୁ । ରାଜପୁଅ ଯାଇ ତା ପାଦ ଜୋତାରେ ପୂରାଇଲା । ସମସ୍ତେ ଚାରିପଟେ ହସି ହସି ଗଡ଼ିପିବାକୁ ଲାଗିଲେ । ବୁଢ଼ିଆ ହୋ ହୋ ହସିଲା । କିନ୍ତୁ ସମସ୍ତଙ୍କୁ ବୋକା ବନେଇ ଜୋତା ଠିକ ରାଜପୁଅ ପାଦରେ ପଶିଗଲା । ଜୋତାଟା ଯେମିତି ଠିକ ତାରି ପାଦ ପାଇଁ ତିଆରି ହୋଇଥିଲା । ପୁଣି ତା ପାଖରେ ଆଉ ପଟେ ଜୋତା ବି ରହିଥିଲା ।

ରାଜାଝିଅ ଶେଷରେ ରାଜପୁଅକୁ ବାହାହେବା ସ୍ଥିର ହେଲା । ରାଜପୁଅ ନିଜେ ଡ୍ରାଗନକୁ ମାରିଥିବା କଥା ସମସ୍ତଙ୍କ ଆଗରେ ପ୍ରକାଶ କଲା । ରାଜା ଯେତେବେଳେ ତାକୁ ରାଜପୋଷାକ ପିନ୍ଧାଇ

Digitized by srujanika@gmail.com

ମୁଣ୍ଡରେ ସୁନାର ମୁକୁଟ ଲଗେଇଦେଲେ ସେତେବେଳେ ତାଠାରୁ ଆଉ ସୁନ୍ଦର ରଜାପୁଅ ଆଉ ପୂର୍ବରୁ କେହି କେବେ ଦେଖିଥିଲେ ବୋଲି ମନେ ପକେଇ ପାରିଲେ ନାହିଁ । ବଡ଼ ଜାକଜମକ, ଭୋଜ-ଭାତରେ, ରଜାପୁଅ ରଜାଝିଅକୁ ବାହାହେଲା । ବାହାଘରରେ ନ ଦିନ, ନ ରାତି, ନ ଘଣ୍ଟା, ନ, ମିନଟ, ନ ସେକେଣ୍ଡ ପର୍ଯ୍ୟନ୍ତ ରାଜ୍ୟ ସାରା ଲୋକ ମଜା କଲେ । କେତେ ବାଣ ଫୁଟିଲା, କେତେ ନାଚ ଗୀତ ହେଲା, କେତେ ଦାନ ଖଇରାତ ହେଲା, କେତେ ଖିଆପିଆ ହେଲା, ହେଲେ ମୁଁ ଗଲାବେଳକୁ ସବୁ ସରିଥିଲା । ମୋତେ କେହି ପଚାରିଲେ ନାହିଁ କି ଡାକିଲେ ନାହିଁ ।

ରଜାପୁଅ ରଜା ହୋଇ ସୁଖରେ ଲୋକଙ୍କୁ ପାଳିଲା । ତା ବାପାଙ୍କ ପାଖକୁ ଖବର ପଠାଇଲା । ସେତେବେଳକୁ ରଜା ବୁଢ଼ା ହୋଇ ଯାଇଥିଲେ ଓ ତାକୁ ଦେଖିବେ ବୋଲି ଅନେଇ ବସିଥିଲେ । ରଜା ପୁଅ ବୋହୂଙ୍କୁ ଦେଖି କୋଟିନିଧି ପାଇଲା ପରି ହେଲେ । ଶେଷରେ ରାଜ୍ୟ ଭାର ରଜାପୁଅକୁ ଦେଇ ସେ ବଣକୁ ତପସ୍ୟା କରିବାକୁ ଗଲେ । ରାଜାପୁଅ ତା ନିଜ ରାଜ୍ୟରୁ ତା ଶ୍ୱଶୁର ଘର ରାଜ୍ୟ ପର୍ଯ୍ୟନ୍ତ ତା ରାଜ୍ୟ ବଢ଼େଇ ରାଜାଝିଅ ସାଙ୍ଗରେ ସୁଖରେ ରହିଲା ।



Digitized by srujanika@gmail.com




ଉଚ୍ଚ ପର୍ବତର ଧାରରେ, ବଣ ସେପାଖରେ, ସମୁଦ୍ର କୂଳରେ ଗୋଟିଏ ଛୋଟିଆ ଗାଁ ଟିଏ ଆକାଶକୁ ମୁହଁକରି କେଉଁକାଳୁ ରହିଛି । ସେଇ ଗାଁରେ ବହୁଦିନ ତଳେ ବୁଢ଼ା ବୁଢ଼ୀଟିଏ ତାର ତିନି ପୁଅଙ୍କୁ ନେଇ ରହୁଥିଲେ । ବଡ଼ପୁଅ, ମଦନ ସବୁଠୁ ବୁଦ୍ଧିଆ, ତା ତଳ ପୁଅ, ସପନ ଯେତିକି ବୁଦ୍ଧିଆ, ସେତିକି ବୋକା । ସବା ସାନପୁଅ, ତପନ ସବୁଠୁ ବୋକା । ଯେତେବେଳେ ବଡ଼ ଦୁଇପୁଅ ଜମିରେ ଧାନବୁଣି, ତାକୁ ଅମଳ କରି ଘରେ ରଖି, ସହରକୁ ମଉଜ କରିବାକୁ ଯାଆନ୍ତି, ସେତେବେଳେ ସାନପୁଅ କିଛି ନକରି ଘରେ ଆରାମରେ ଶୋଇରହେ । ସେଥିପାଇଁ ଗାଁ ସାରା ଲୋକ ତାକୁ ଡାକନ୍ତି "ବୋକା ତପନ" ।

ଦିନେ ସକାଳୁ ବୁଢ଼ା ବୁଢ଼ୀ ତା ଖଳାକୁ ଯାଇ ଦେଖିଲେ ତା ଛଣରୁ ଥୋଡ଼ାଏ କିଏ ଚୋରି କରି ନେଇ ଯାଇଛି । ସେଇଠୁ ସେ ତା ବଡ଼ପୁଅକୁ ରାତିରେ ଜଗିବାକୁ ପଠାଇଲେ ।

Digitized by srujanika@gmail.com

ମଦନ ତାର ଦାଆ ଆଉ କୁରାଢ଼ି ନେଇ ଖଳାରେ ପହଞ୍ଚିଲା ଜଗିବ ବୋଲି । ସେଦିନ ରାତିରେ ଭାରି ଶୀତ, ଥଣ୍ଡା କାକୁଆ ପବନରେ ଗଞ୍ଜାଗ୍ର ହାଡ଼ ଥରି ଯାଉଥାଏ । ମଦନ ଭାବିଲା "ଦେଖ କିଏ ଏତିକି ବଠା ଛଣ, ନେଇଯାଉଛି ବୋଲି ତାକୁ ଜଗିବା-ପାଇଁ ସାରା ରାତି ଶୀତରେ କଷ୍ଟ ପାଇବ ?" ଏଇଆ କହି ସେ ଟିକେ ଉଷୁମ, କଣିକିଆ ଜାଗା ବାଛି, ତା ମୋଟା କମ୍ବଳକୁ ଘୋଡ଼େଇ ହୋଇ ଆରାମରେ ଶୋଇ ପଡ଼ିଲା ।

ସକାଳୁ ଉଠି ଦେଖିଲା ଲୋକଙ୍କୁ ଆଗ ରାତି ଭଲ ଗୁଡ଼ାଏ ଛଣ ପୁଣି କିଏ ଚୋରି କରି ନେଇଛି, ସେ ତାପରେ ଜାକରରେ ତା ଦେହକୁ ଭଲକରି ଓଜାକରି ଯାଇ ବଡ଼ ଘୋରରୁ ଘର କବାଟ ବାଡ଼େଇଲା । ବହୁତ ସମୟ କବାଟ ବାଡ଼େଇବା ପରେ ତା ବାପା କବାଟ ଖୋଲିଲା । ମଦନକୁ ଦେଖି ତା ବାପା ପଚାରିଲା "ତୁ ଚୋରକୁ ଦେଖିଲୁକି ?" ସେ କହିଲା "ମୁଁ ଚୋର ଆସିବା ଶବ୍ଦ ଦୂରରୁ ଶୁଣି ପାଟି କରିବାରୁ ଚୋର ସାହାସ କରି ଆଉ ପାଖକୁ ଆସିଲା ନାହିଁ । କିନ୍ତୁ ମୁଁ କାଲି ଶୀତରେ ଥରି ଥରି ରାତି ସାରା ଶୋଇ ନାହିଁ ।" ତା ବାପା ତା କଥା ଶୁଣି ତାକୁ ଭାରି ପ୍ରଶଂସା କଲା । ତାପରେ ସେ ତା ମଝିଆଁ ପୁଅକୁ ଡାକି ପରଦିନ ରାତିରେ ଜଗିବାକୁ ପଠାଇଲା ।

ସେଇଠୁ ସପନ ତା କଟୁରି ଆଉ ଲମ୍ବା ଛୁରୀ ନେଇ ଖଳାକୁ ଜଗିବାକୁ ଗଲା । ସେଦିନ ରାତିରେ ଭୀଷଣ ବର୍ଷା ହେଲା । ସେ ଭାବିଲା କିଏ ଏଇ ବର୍ଷା ରାତିରେ ଭିଜି, ରାତି ଅନିଦ୍ରା ହୋଇ ଗଣ୍ଡେ ଏ ଶୁଖିଲା ଘାସକୁ ଜଗିକି ବସିବ ? ଏଇଆ ଭାବି ସେ ଟିକିଏ ଶୁଖିଲା ଜାଗା ଖୋଜି ତା ଉପରେ ବିଛଣା ପକାଇ ତା ଲୁଗାର ଘୋଡ଼ ହୋଇ ଶୋଇ ପଡ଼ିଲା ।

Digitized by srujanika@gmail.com

ସକାଳୁ ଉଠି ଦେଖିଲା ଯେ ଅନ୍ଧାର ବହୁତ'ଛଣ ବେଶି ହୋଇ-ଯାଇଛି । ସେ ସେଇଠୁ ପାଖରେ ଥିବା ଝରଣା ପାଖକୁ ଯାଇ ତା ପୋଷାକ ଉପରେ ପାଣି ଢାଳି ଓଦା ହୋଇ ଯାଇ ଘରର ବଡ଼ ସକାଳୁ କବାଟ ବାଡ଼େଇଲା । ତା ବାପା କବାଟ ଖୋଲି ତାକୁ ଦେଖି ପଚାରିଲେ "କାଲି ରାତିରେ ଚୋରକୁ ଦେଖିଲୁ ?"

ସପନ କହିଲା "ହଁ ଦେଖିଲି । ସେ ଚୋର ପଳାଇ ଯାଉ ଯାଉ ମୁଁ ତା କୋଟ୍‌କୁ ଧରି ପକାଇ ତାକୁ ଏମିତି ମାଡ଼ ଦେଲି ଯେ ସେ ତା ଜୀବନ ସାରା ମନେ ରଖିଥିବ । କିନ୍ତୁ ସେ ଚୋରଟା ତା କୋଟ୍‌କୁ ଛୁଣ୍ଡାଇ ଦଉଡ଼ି ପଳାଇଗଲା । ହେଲେ ମୁଁ କାଲି ରାତିରେ ବର୍ଷାରେ ଭାରି ହଇରାଣ ହେଲି । ସାରା ରାତି ବର୍ଷାରେ ଭିଜି ଭିଜି ଅନିଦ୍ରାରେ ବସି ରହିଥିଲି ।"

ତା ବାପା ତା କଥା ଶୁଣି ଭାରି ଖୁସି ହୋଇ ତାକୁ ଭାରି ପ୍ରଶଂସା କଲା । ପ୍ରଶଂସା ଶୁଣି ସପନର ଛାତି ଗର୍ବରେ ଫୁଲି ଉଠିଲା । ତା'ପରେ ବୁଢ଼ା ବୋକା ତପନକୁ ଡାକି କହିଲା, "ଏଥର ତୋର ପାଳି । ହେଲେ ତୁ ତ ଏଡ଼େ ବୋକା ଯେ ଗୋଟାଏ ଛୋଟ ଘରଚଟିଆକୁ ଜଗିବାକୁ କହିଲେ ବି ତୁ ଜଗି ପାରିବୁ ନାହିଁ । ତେଣୁ ତୋତେ ଜଗିବାକୁ ପଠାଇବା ବୃଥା ।"

ତେବେ ବି ତା ପରଦିନ ରାତିରେ ବୋକା ତପନ ଖଳା ଜଗିବାକୁ ଗଲା । ସେ ସାଙ୍ଗରେ ଖଣ୍ଡେ ଛୋଟ ରୁଟି ନେଇ ପବନରେ ହୁସୁରି ମାରି ମାରି ଯାଇ ଖଳାରେ ପହଞ୍ଚିଲା । ସେ ତାର ଭାଇମାନଙ୍କ ପରି ଶୋଇ ନ ପଡ଼ି ଖଳାର ଚାରିଆଡ଼ ବୁଲି ଦେଖିଲା । ଯେତେବେଳେ ଆକାଶରେ ଜହ୍ନ ଉଠିଲା ସେ ଗୋଟେ ଛୋଟିଆ

Digitized by srujanika@gmail.com

ଗୁଡ଼ାମ୍‌ନେ ବସି ସାଙ୍ଗରେ ନେଇଥିବା ରୁଟି ଖଣ୍ଡିକ ଆନନ୍ଦରେ ଖାଇଲା; ତାକୁ ଘର ଖେଜା ବି ହେଉଥିଲା ।

ହଠାତ, ମଝିବାଟରେ ସେ ଗୋଟାଏ ଘୋଡ଼ା ବୋବେଇବା ଶୁଣି ପାରିଲା । ସେ ଗୁଡ଼ାମ୍‌ନେ ଲୁଚିବସି ଅନେଇ ଦେଖିଲା ଭାରି ସୁନ୍ଦରିଆ ଘୋଡ଼ାଟିଏ, ବରଫ ପରି ତା ଦେହ ଧଳା, ତା ବେକ ଉପରେ ସୁନାରଙ୍ଗର କେଶର ଝୁଲୁଛି ।

ସେଇଠୁ ବୋକା ତପନ ମନକୁ ମନ କହିଲା, "ତୁ ତେବେ ଆମ ବଣ ଘୋଡ଼ା ! ତୁ ଆଜି ଠିକେ ମୋ ପାଖ ପର୍ଯ୍ୟନ୍ତ ଆସିଲେ ମୁଁ ତୋ ପିଠି ଉପରେ ଝିଙ୍କ ପରି ଲାଗି ବସିବି । ଘୋଡ଼ାଟି "ଆସ୍ତେ ଆସ୍ତେ ପାଖକୁ ଆସିଲା ଏବଂ ବୋକା ତପନ ସୁବିଧା ଉଣ୍ଡି ତା ପିଠି ଉପରକୁ ଡିଆଁ ମାରି ତା ଲାଞ୍ଜକୁ ଟାଣିଧରି ଘୋଡ଼ାର ପଛପଟକୁ ମୁହଁ କରି ବସି ପଡ଼ିଲା ।

ଧଳା ଘୋଡ଼ାର ଆଖିରେ ଝଳକ ଚମକିଗଲା । ସେ ତା ବେକକୁ ସାପ ପରି ଘୁରାଇଲା, ତା ଆଗ ଗୋଡ଼ରେ ଡିଆଁ ମାରି ଖୁରଆଡ଼କୁ ଶର ପରି ଖେଦିବାକୁ ଲାଗିଲା । ଝଡ଼ଆସାରୁ ଦୌଡ଼ିଲା, ଚଢ଼େଇ ପରି ଆକାଶକୁ ଉଠିଗଲା; ପବନ ବେଗରେ ଯାଇ ମଟନ, ବଣ ଦେହରେ ପିଟି ହେଲା, ହେଲେ ଘୋଡ଼ା ବୋକା ତପନକୁ ତା ପିଠି ଉପରୁ ଖସେଇ ପାରିଲା ନାହିଁ । ତପନ ତା ଲାଞ୍ଜକୁ ଜାବୁଡ଼ି ଧରି ତା ପିଠି ଉପରେ ବସି ରହିଲା ।

ଶେଷରେ ଏମିତି ହଉ ହେଉ ଘୋର ହୋଇ ଆସିଲା । ମଣିଷ ପରି ଘୋଡ଼ା ତା ଡିଆଁ ବନ୍ଦ କରି ଅଣନିଶ୍ବାସି ହୋଇ କଥା କହିବାକୁ ଆରମ୍ଭ କହିଲା । "ଅଚ୍ଛା ତପନ, ସେ କହିଲା, ଯେତେବେଳେ ତୁ

Digitized by srujanika@gmail.com

ମୋ ଉପରେ ବସିଛୁ ମନେ ହେଉଛୁ, ତୁ ମୋତେ ରଖିବୁ । ତା ହେଲେ ଗୋଟିଏ କାମ କର । ତୁ ମୋତେ ଘରକୁ ନେଇ ଚାଲ ଏବଂ ଘରେ ମୋତେ ତିନି ଦିନ ପର୍ଯ୍ୟନ୍ତ ଲୁଚାଇ ରଖ । କିନ୍ତୁ ତିନିଦିନଯାକ ବନ୍ଦ ଘରରୁ, ସୂର୍ଯ୍ୟ ଉଠିଲା ବେଳକୁ ତୁ ମୋତେ ବାହାରରେ ଚରିବାକୁ ଛାଡ଼ିଦେବୁ । ତାପରେ ତିନିଦିନ ପରେ ମୁଁ ତୋତେ ତିନିଟା ଏମିତିକା ସୁନ୍ଦରିଆ ଶ୍ରେଷ୍ଠ ଘୋଡ଼ା ଛୁଆ ଦେବି ଯେ ସେମିତିକା ଆଉ କଏ, କେବେ, କେଉଁଠି ଦେଖି ନ ଥିବେ କି ଶୁଣି ନ ଥିବେ । ସେଥିରୁ ଦୁଇଟା ରଜାଙ୍କର ଘୋଡ଼ା, ଗୋଟାଏ ମାଟିଆ ଏବଂ ଆରଟା କଳରା । ସେ ଦୁଇଟା ତୁ ଇଚ୍ଛା କଲେ ବିକି ଦେଇ ପାରିବୁ । କିନ୍ତୁ ତୃତୀୟ ଘୋଡ଼ାଟା ଗୋଟାଏ କୁଜା ଘୋଡ଼ା, ମୋଟେ ତିନି ଫୁଟ ଉଚ୍ଚ, ତାର କାନ ଦୁଇଟା ଫୁଟେ ଫୁଟେ ଲମ୍ବା । ଆଉ ତୁ ଏଇ ଘୋଡ଼ାକୁ କେବେହେଲେ ବିକିବୁ ନାହିଁ । ତୋତେ ଯିଏ ଯେତେ ସୁନା କି ହୀରା ଦେଲେ ବି ଦେବୁ ନାହିଁ । ତୁ ଯେତେଦିନ ଏ ସଂସାରରେ ଥିବୁ ସେତେଦିନ ପର୍ଯ୍ୟନ୍ତ ସେ ତୋର କାମ କରିବ । ଶୀତଦିନେ ତୋତେ ସେ ଶୀତରୁ ରକ୍ଷା କରିବ, ଭୋକ ହେଲେ ବି ତୋତେ ସେ ଖାଇବା ଯୋଗେଇ ଦେବ । ଏବଂ ଏଇ ତିନିଟା ଘୋଡ଼ା ବଦଳରେ ତୁ ମୋତେ ଛାଡ଼ିଦେବୁ ।"

ତପନ ଧଳା ଘୋଡ଼ା କଥାରେ ରାଜି ହେଲା । ଘୋଡ଼ାରେ ଚଢ଼ି ଯାଇ ଘରେ ପହଞ୍ଚି ଗୋଟାଏ ଖାଲି ଘୋଡ଼ାଶାଳରେ ତାକୁ ଲୁଚାଇ ଦେଲା । ଘୋଡ଼ାଶାଳ ଦୁଆର ମୁହଁରେ ଖଣ୍ଡେ ଘୋଡ଼ା ଚମଡ଼ା ଆଉଜାଇ ଦେଇ ସେ ଘରକୁ ଯାଇ କବାଟ ବାଡ଼େଇଲା । ତା ଭାଇମାନେ ଦୁଆର ଖୋଲିଲେ ।

Digitized by srujanika@gmail.com

ତାକୁ ଦେଖି ସେମାନେ ଥଟ୍ଟାକରି ପଚାରିଲେ "ହଇରେ, ତୁ ତ ନିଶ୍ଚୟ ଷ୍ୱେରକୁ ଦେଖିଥିବୁ। ଖାଲି କ'ଣ ଦେଖିଥିବୁ, ତାକୁ ତୁ ଧରିଥିବୁ କି କଣ! କ'ଣ ହେଲା ଆମକୁ କହ।"

ତପନ କହିଲା "ମୁଁ ଷ୍ୱେରକୁ ଧରିଥିଲି, ତା ପିଠି ଉପରେ ତା ଲାଞ୍ଜକୁ ଧରି ବସି କାହିଁ କେତେ ଆଡ଼ ବୁଲିଲି ଯେ ଠିକଣା ନାହିଁ। ଆଉ ଟିକିଏ ହୋଇଥିଲେ ମୋ ବେକ ଭାଙ୍ଗି ଯାଇଥାନ୍ତା, ବିଶ୍ୱାସ କର, ମୁଁ ଭରି ହାଲିଆ ହୋଇ ପଡ଼ିଛି।" ଏଇଆ କହି ସେ ତା ନିଜ ଜାଗାକୁ ଶୋଇବାକୁ ଚାଲିଗଲା, ଗୋଡ଼ରୁ ଜୋତା ବି ଖୋଲିଲା ନାହିଁ। ତା ଭାଇମାନେ ଓ ତା ବାପା ତା କଥା ଶୁଣି ହସି ହସି ଗଡ଼ିଗଲେ। ତାର କଚ୍ଛ କଥା ସେମାନେ ବିଶ୍ୱାସ କଲେ ନାହିଁ।

ବୋକା ତପନ ତା ଧଳା ଘୋଡ଼ାକୁ ସମସ୍ତଙ୍କ ଠାରୁ ଲୁଚାଇ ରଖିଥାଏ। ତିନିଦିନ ପର୍ଯ୍ୟନ୍ତ ସେ ପ୍ରତିଦିନ ସକାଳୁ, ସୂର୍ଯ୍ୟ ଉଇଁବା ବେଳକୁ ଉଠି ଘୋଡ଼ାକୁ କାକରରେ ଗଡ଼ିବାକୁ ଛାଡ଼ିଦିଏ। ତାପରେ ଚତୁର୍ଥ ଦିନ ସକାଳୁ ସେ ଯେତେବେଳେ ଘୋଡ଼ାଶାଳକୁ ଗଲା ଦେଖିଲା ତା ଧଳା ଘୋଡ଼ା ପାଖରେ ଆହୁରି ତିନିଟା ଘୋଡ଼ା ଛୁଆ ଠିଆ ହୋଇଛନ୍ତି। ଦୁଇଟା ଘୋଡ଼ା ଛୁଆ ଭାରି ସୁନ୍ଦର, ଗୋଟାଏ ମାଟିଆ ଆଉଟି କସର। ସେମାନଙ୍କ ଆଖି ଦୁଇଟା ଯେମିତି ଦିଟା ନେଳିଆ ମଣି ପରି ଦେଖା ଯାଉଥାଏ। ସେମାନଙ୍କ କେଶ ଆଉ ଲାଞ୍ଜ ସୁନାର, ଆଉ ତାଙ୍କ ଖୁରା ସବୁ ଯେମିତି ରତ୍ନରେ ପୋହଳାସବୁ ଖଞ୍ଜାହୋଇଛି। ହେଲେ ତୃତୀୟ ଘୋଡ଼ାଟା, ଗୋଟିଏ ଖେଳନା ଭଳି ଛୋଟ, ତା ପିଠିରେ ଦୁଇଟା କୁଜ ଓ ତା କାନ ଦୁଇଟା ଫୁଟେ ଲେଖାଁ ଲମ୍ବ।

Digitized by srujanika@gmail.com

ତପନ ଖୁସିରେ କୁରୁଳି ଉଠିଲା । ସେ ଧଳା ଘୋଡ଼ାକୁ ବହୁତ ଧନ୍ୟବାଦ ଦେଇ ତାକୁ ଛାଡ଼ି ଦେଲା । ସେ ଖୁବ ବେଗରେ ସେଠୁ ଉଡ଼ି ଚାଲିଗଲା । ଏଥର ତପନ ତା ତିନି ଘୋଡ଼ାଙ୍କୁ ଭଲ କରି ଦେଖିଲା । ତାକୁ ତା କୁଜା ଘୋଡ଼ା, ଯେଉଁ ମୋଟେ ତା ଅଣ୍ଟା ଉଚ୍ଚ, ଦେଖିବାକୁ ଗୋଟାଏ କୁକୁର ପରି, ଖୁବ ଭଲ ଲାଗିଲା । କୁଜା ଘୋଡ଼ାଟା ତପନ ପାଖରେ ତା ଛୋଟ ଛୋଟ ଗୋଡ଼ରେ ଡେଇଁଥାଏ । ସେ ତା ଘୋଡ଼ାମାନଙ୍କୁ, ଯେଉଁଠି ଧଳା ଘୋଡ଼ାକୁ ରଖିଥିଲା ସେଇଠି ଲୁଚାଇ ଦେଲା । ପ୍ରତିଦିନ ସକାଳୁ ସେ କଳୁ ବଡ଼ ଭୋରରୁ ଉଠି ସେମାନଙ୍କୁ କାକରରେ ଗଡ଼ିବାକୁ ଛାଡ଼ିଦିଏ ସେମାନଙ୍କର ବହୁତ ଯତ୍ନ ନିଏ, ତାଙ୍କ ସହିତ କଥା ହୁଏ ଏବଂ ସେମାନଙ୍କ ଦେହକୁ ଝାଡ଼ି ଚକ୍ ଚକ୍ ସଫା କରିଦିଏ ।

ଏମିତି କେତେ ଦିନ ଚାଲିଗଲା । ଦିନେ ହଠାତ ତପନର ଭାଇ ମଦନ ସହରରୁ ରାତିରେ ବହୁତ ଡେରିରେ ଫେରି ଅନ୍ଧାରରେ ବାଟ ନ ପାଇ ଘୋଡ଼ାଶାଳ ଭିତରକୁ ପଶିଗଲା । ଅନ୍ଧାରରେ କ'ଣ ଗୋଟାଏ ଶବ୍ଦ ଶୁଣି ସେ ଡରିଆସିଲା କାଠି ମାରି ଦେଖିଲା ବେଳକୁ ତିନିଟା ଘୋଡ଼ା । ଦିଟା ଖୁବ ସୁନ୍ଦରିଆ, ଆଉ ଗୋଟାଏ କୁଜା । ସେ ଖୁବ ଆଶ୍ଚର୍ଯ୍ୟ ହୋଇଗଲା । ସେ ମନକୁ ମନ କହିଲା, 'ଏଥର ବୁଝିଲି କାହିଁକି ଆମ ବୋକା ତପନ ଏ ଘୋଡ଼ାଶାଳକୁ ଏତେଥର ଆସୁଛି ।' ସେଇଠୁ ସେ ଘରକୁ ଦୌଡ଼ି ଯାଇ ସପନକୁ ଡାକି ଆଣି କହିଲା, 'ଦେଖିବୁ ଆ, ତପନ କେଉଁଠୁ ସୁନ୍ଦରିଆ ଘୋଡ଼ା ଆଣି ଘୋଡ଼ାଶାଳରେ ଲୁଚାଇ ରଖିଛି । ସପନ ତ ଆସି ଦେଖି କାବା । ମଦନ କହିଲା ବୋକା ତପନ ଏଗୁଡ଼ାଙ୍କୁ ପାଇଲା କେଉଁଠୁ ? ତୁ ଆଉ ମୁଁ ତ ଜୀବନ ସାରା

ଚେଷ୍ଟା କଲେ ବି ଏ ଜିନିଷ ପାଆନ୍ତେ ନାହିଁ । ଆମେ ତାଠାରୁ ବୁଦ୍ଧିଆ ହୋଇ ଲାଭ କ'ଣ ?

ସପନ କହିଲା, "ଯାହା କହିଲୁ ସତ । ଆମେ ଗୋଟାଏ କାମ କରିବା । ଆସନ୍ତା ସପ୍ତାହରେ ସହରରେ ହାଟ । ବହୁ ଦୂର ଦୂର ଜାଗାରୁ ବେପାରୀମାନେ ଆସିବେ । କେତେ କେତେ ରାଜାଙ୍କ ଲୋକେ ବି ସେଇ ହାଟକୁ କିଣାବିକା କରିବାକୁ ଆସନ୍ତି । ସେଇ ହାଟରେ ଆମେ ଏଇ ଘୋଡ଼ାମାନଙ୍କୁ ନେଇ ବିକିଦେବା । ବହୁତ ଦରରେ ଏଇ ସୁନ୍ଦରିଆ ଘୋଡ଼ା ଦୁଇଟା ବିକ୍ରି ହେବ । ସେଇ ପଇସାରେ ଆମେ ଧନୀ ହେବା, ବୋକା ତପନ ତା'ପରେ ଆସି ତା ଘୋଡ଼ାକୁ ଖୋଜୁଥାଉ, ଆଉ ତା କୁଜା ଘୋଡ଼ାକୁ ଧରି ବୁଲୁଥାଉ ।'

ସପନ କଥାରେ ମଦନ ରାଜି ହୋଇଗଲା । ସେଇଠୁ ସେମାନେ ମନ ଖୁସିରେ ଟଙ୍କା ପାଇଲେ କେମିତି ଖର୍ଚ୍ଚ କରିବେ ସେଇକଥା ଭାବି ଭାବି ଘରକୁ ଗଲେ । ପର ସପ୍ତାହରେ ଦୁଇଜଣ ଯାକ ରାତିରୁ ଉଠି ଘୋଡ଼ା ଦୁଇଟାଙ୍କୁ ଲୁଚାଇ ନେଇ ହାଟକୁ ବାହାରିଗଲେ ।

ସକାଳ ହେଲା । ବୋକା ତପନ ଦୁଇଭାଇଙ୍କ ବସ୍ତୁର କଥା ବା କେମିତି ଜାଣିବ ? ସେ ବଡ଼ ଭୋରରୁ ଘୋଡ଼ାଶାଳକୁ ଆସି ଦେଖେ ତ ତା ସୁନ୍ଦରିଆ ଘୋଡ଼ା ଦୁଇଟାଯାକ ନାହାଁନ୍ତି । ଘୋଡ଼ାଙ୍କୁ ନ ଦେଖି ସେ ମୁଣ୍ଡରେ ହାତଦେଇ ଭେଁ ଭେଁ ହୋଇ କାନ୍ଦିବାକୁ ଲାଗିଲା । ଖାଲି ସେ କୁଜା, ଲମ୍ବାକାନିଆ ଟିକି ଘୋଡ଼ାଟା ଖୁସିରେ ତା ଗୋଡ଼ ପାଖରେ ନାଚିବାରେ ଲାଗିଥାଏ । ତପନ ବେଶୀ କାନ୍ଦିବା ଦେଖି କୁଜା ଘୋଡ଼ା ମଣିଷ ପରି କହିଲା, 'ସାନ ମାଲିକେ,

Digitized by srujanika@gmail.com

କାନ୍ଦନା । ତମ ଦୁଇଭାଇ ତ ତମର ସୁନ୍ଦରିଆ ଘୋଡ଼ା ଦୁଇଟାକୁ ନେଇ ହାଟକୁ ଯାଇଛନ୍ତି ବିକିବାକୁ । ତମେ ମୋ ପିଠି ଉପରେ ମୋ ଲମ୍ବା କାନ ଦୁଇଟାକୁ ଜାବୁଡ଼ି ଧରି ବସ । ମୁଁ ତୁମକୁ, ତାଙ୍କ ପାଖକୁ ନେଇଯିବି । ଦେଖ, ଯେମିତି ମୋ କାନରୁ ହାତ ନ ଛାଡ଼େ ।'

ସେସ୍ବଠ୍ ବୋକା ତପନ ଦୁଇହାତରେ ତା ଅଖିକୁ ପୋଛି ପକାଇ କୁଜା ଘୋଡ଼ା ପିଠି ଉପରେ କାନକୁ ଧରି ବସି ପଡ଼ିଲା । କୁଜା ଘୋଡ଼ା ତା କାନକୁ ଠିଆକରି, ଅଗ ଗୋଡ଼ ଦି'ଟାକୁ ଟେକି ବେକ ଫୁଲେଇ, ତିନିଥର ହୁଙ୍କାରି ମାରି, ପବନ ପରି ଧାଇଁକରି ଉଡ଼ିଗଲା । ଆଖିପିଛୁଳାକେ ଯାଇ ଦୁହେଁ ବଜାରରେ ପହଞ୍ଚିଗଲେ ।

ମଦନ, ସପନ, ବୋକା ତପନକୁ ତା କୁଜାଘୋଡ଼ା ପିଠିରେ ଝଡ଼ର ବେଗରେ ଆସି ପହଞ୍ଚିବାର ଦେଖି ତାଙ୍କ ବୁଦ୍ଧି ବଣା ହୋଇଗଲା । ବୋକା ତପନ ସେମାନଙ୍କୁ କହିଲା, 'ତମେ ଦିଜଣ ମୋ ଠାରୁ ବୁଦ୍ଧିଆ ହୋଇଥିବ, କିନ୍ତୁ ମୁଁ ତ ତମର କିଛି ଚୋରି କରିନାହିଁ । ତମେ କାହିଁକି ମୋ ଘୋଡ଼ା ଚୋରି କଲ ?'

ମଦନ କହିଲା "ବୁଝିଲୁ ତପନ, ଆମେ ତୋ ଘୋଡ଼ା ଦୁଇଟା ଆଣିଛୁ ସତ, କିନ୍ତୁ ଆମେ ତୋର କିଛି କ୍ଷତି କରିନାହୁଁ । ତୁ ତ ଜାଣିଛୁ ଏଥର ଫସଲ କେମିତି ଖରାପ ହୋଇଛି । ଆମେ ଦି'ଜଣ ତ ବଡ଼ ମନ ଖରାପରେ ଥିଲୁ । ଯେମିତି ତୋ ଘୋଡ଼ା ଦୁଇଟାକୁ ଦେଖିଲ, ଆମେ ଭାବିଲୁ ତୁ ତ ଘୋଡ଼ା ବିକ୍ରି ଦରଦାମ୍ କଥା କିଛି ଜାଣିନୁ, ଠକ ମିରେ ପଡ଼ିଯିବୁ, ସେଥିପାଇଁ ଆମେ ତୋ ଘୋଡ଼ା ବିକିବାକୁ ବଜାରକୁ ନେଇ ଆସିଥିଲୁ । ଘୋଡ଼ା ବିକା ଯେଉଁ ଟଙ୍କା

Digitized by srujanika@gmail.com

ମିଳିବ ସେଥିରେ ଆମେ ବାପାଙ୍କୁ କିଛି ସାହାଯ୍ୟ କରିପାରିବା । ତା ଛଡ଼ା ଆମେ ବି ଏଇ ଟଙ୍କାରେ ତୋ ପାଇଁ ଜୋତା, ଜାମା କିଣିଦେବୁ ବୋଲି ଠିକ୍ କରିଛୁ । ତୁ ଆମକୁ ଭୁଲ ବୁଝୁଛୁ କାହିଁକି ?

ତପନ କହିଲା, 'ହଉ, ହଉ, ତମ ଭଲେଇ ଗୁଣ ଗୁଡ଼ା । ତମେ ଯଦି ଘୋଡ଼ାଙ୍କୁ ବିକିବ, ତେବେ ମୁଁ ତମ ସାଙ୍ଗରେ ଯିବି ।' ତା ବି ଭାଇ ମନର କଥାଶୁଣି ମନେମନେ ତା ଉପରେ ଭାରି ଖପା ହେଲେ । ତେବେ ଆଉ ଉପାୟ କ'ଣ ? ତିନିଜଣଯାକ ସାଙ୍ଗ ହୋଇ ବଜାର ଭିତରକୁ ଗଲେ । ବଜାରରେ ତାଙ୍କର ସୁନ୍ଦରିଆ ଅଦ୍ଭୁତ ଘୋଡ଼ା ଦେଖି ଲୋକମାନେ ଆଶ୍ଚର୍ଯ୍ୟରେ ଚାରିପାଖରେ ଘେରିଗଲେ । ସତେ କି ଗୋଟାଏ ମେଳା ବସିଗଲା । ରାଜାଙ୍କ ଲୋକମାନେ ସେ ଘୋଡ଼ା ଦେଖି ରାଜାଙ୍କୁ ଖବର ଦେଲେ । ମଣି ମୁକ୍ତା ଖଞ୍ଜା, ସତ ଘୋଡ଼ା କଥା ଶୁଣି ରାଜା ଆଉ ସମ୍ଭାଳିହେଉଛନ୍ତି କୁଆଡ଼ୁ ? ସେ ସାଙ୍ଗେ ସାଙ୍ଗେ ଗାଡ଼ିରେ ବସି ବଜାରରେ ପହଞ୍ଚି-ଗଲେ । ରାଜା ତ ଘୋଡ଼ାକୁ ଦେଖି ମୋହିଗଲେ । ସେ ଘୋଡ଼ାର ବେକ, କେଶର ଆପୁଡ଼ାଇ କିଏ ତାର ମାଲିକ ବୋଲି ପଚାରିଲେ ।

ବୋକା ତପନ କହିଲା,'ମହାରାଜ, ମୁଁ ତାଙ୍କର ମାଲିକ ।'

ରାଜା କହିଲେ,'ତମେ ଏମାନଙ୍କ ପାଇଁ କେତେ ଦାମ୍ ଚାହୁଁଛ ?'

ତପନ କହିଲା, 'ମୋର ତିନିମୁଣି ସୁନା ମୋହର ଦରକାର ।' ରାଜା କହିଲେ, 'ଠିକ୍ ଅଛି, ସେ ତାକୁ ତିନିମୁଣି ସୁନା ମୋହର ଦେଇ ଘୋଡ଼ାକୁ ଧରିବାରକୁ ନେବାପାଇଁ ତାଙ୍କ ସହିସଙ୍କୁ ଆଦେଶ ଦେଲେ । କିନ୍ତୁ ଘୋଡ଼ାମାନେ ବାଟରେ ସହିସଙ୍କୁ ତଳେ ପକାଇ

Digitized by srujanika@gmail.com

ନେଇ, ତାଠାରୁ ମୁକୁଳି ଆସି ତପନ ପାଖରେ ପହଞ୍ଚିଲେ । ସେଇଠୁ ରାଜା ତପନକୁ ଡକାଇ କହିଲେ, 'ଏ ଘୋଡ଼ା ତ ତମ-ଛଡ଼ା ଆଉ କାହା କଥା ମାନିବା ପରି ଜଣାପଡ଼ୁନି । ତେଣୁ ତମେ ଆସି ମୋ ଘୋଡ଼ାଶାଳର ମୁଖିଆ ହୋଇ ରୁହ । ଘୋଡ଼ାମାନଙ୍କର ସବୁ ସୁବିଧା, ଅସୁବିଧା ତମେ ବୁଝିବ ।'

ତପନ ଆଉ କ'ଣ କରିବ । ସେ ତା ଭାଇମାନଙ୍କୁ ଡାକି ତାଙ୍କୁ ଦୁଇ ମୁଣି ସୁନା ମୋହର ଦେଇ, ତାଙ୍କଠାରୁ ବିଦାୟ ନେଇ ରାଜନଅରକୁ ଗଲା । ତା ବାପାଙ୍କର ଦେଖାଶୁଣା କରିବାକୁ ସେ ସେମାନଙ୍କୁ କହିଲା । ତା ପ୍ରେମିଆ କୁଜାଘୋଡ଼ା ବି ତା ସାଙ୍ଗରେ ନାଚି ନାଚି, କୁଦି କୁଦି ନଅରରେ ପହଞ୍ଚିଲା ।

ରାଜାଙ୍କଘରେ ତପନ ମହା ଆଦରରେ ରହିଲା । ସେ ଘୋଡ଼ା-ମାନଙ୍କର ଯତ୍ନ ନେଉଥାଏ । ସବୁଦିନ ବଡ଼ସକାଳୁ ଉଠି ସେ ଘୋଡ଼ା ଦୁଇଟାକୁ କାକରରେ ଗଡ଼ିବାକୁ ଛାଡ଼ିଦିଏ । ତା ପରେ ତାକୁ ଏମିତି ପୋଛୁପୋଛୁ କରିଦିଏ ଯେ ତାଙ୍କ ଦେହ ରୂପାପରି ଝଟକୁଥାଏ । ରାଜା ତାଙ୍କ ଦରବାରରେ ତପନର ଭାରି ପ୍ରଶଂସା କରନ୍ତି । କିନ୍ତୁ ରାଜାଙ୍କ ପ୍ରଶଂସା ଦରବାରର କେତେ ଲୋକଙ୍କୁ ଭଲ ଲାଗିଲା ନାହିଁ । ସହଜେ ଜଣେ ଅଚିହ୍ନା, ଅଜଣା ଲୋକକୁ ରାଜା ଘୋଡ଼ାଶାଳର ମୁଖିଆ କରିବାରୁ ସେମାନେ ମନେ ମନେ ଚିଡ଼ୁଥାନ୍ତି । ତେଣୁ ରାଜାଙ୍କ ପ୍ରଶଂସା ସେମାନଙ୍କୁ କଣ୍ଟାଘାରେ ଚୂନପରି ଲାଗୁଥାଏ । ସେମାନେ କେହି ତପନକୁ ଭଲ ପାଉ ନ ଥାନ୍ତି, ତାହାର କେମିତି କ୍ଷତି କରିବେ ସେହି କଥା ଭାବୁଥାନ୍ତି ।

ଦିନେ ରାଜା ଦରବାରରେ ବସିଥାନ୍ତି । ଏଇ ଲୋକମାନେ ମୁହଁ ଶୁଖାଇ ରାଜାଙ୍କ ପାଖରେ ବସିଥାନ୍ତି । ରାଜା କହିଲେ, 'ତମେ

Digitized by srujanika@gmail.com

ସବୁ କାହିଁକି ମୁହଁ ଶୁଖାଇଛ ? ଆମ ନୂଆ ଘୋଡ଼ା ଦେଖି ତମକୁ ସବୁ କେମିତି ଲାଗୁଛି ?' ସେଇଠୁ ସେ ଗଧ କୁହାଙ୍କ ଭିତରୁ ଜଣେ ଉଠି କହିଲା, 'ମହାରାଜ, ଆମ ଘୋଡ଼ାଶାଳ ମୁଖିଆ ହେଉଛି ଗୋଟାଏ ଯାଦୁକର । 'ସେ କହୁଛି ସେ ଇଚ୍ଛା କଲେ ଆପଣଙ୍କୁ କୋଡ଼ିଏଟା ବାଛୁରି ଥିବା ସୁନାର ଗାଈ ବି ଆଣିଦେଇ ପାରିବ । ସେ ସୁନା ଗାଈର ରୂପାର ଶିଙ୍ଘ ବି ଅଛି । ସେ ଗାଈ କୁଆଡ଼େ ଦକ୍ଷିଣ ଦେଶରେ ମିଳେ ।'

ରାଜା ସେମାନଙ୍କ କଥାଶୁଣି ସଙ୍ଗେ ସଙ୍ଗେ ବୋକା ତପନକୁ ଡକେଇ ପଠେଇଲେ । ରାଜା ତପନକୁ କହିଲେ, 'ତମେ ତ ଭାରି ବାହାଦୁରୀ ଦେଖାଉଛ । ଯଦି ତିନି ଦିନ ଭିତରେ ତମେ ଦକ୍ଷିଣ ଦେଶକୁ ଯାଇ ସୁନାର ଗାଈ, ଆଉ ତାର କୋଡ଼ିଏଟା ସୁନାର ବାଛୁରିଙ୍କୁ ଆଣି ନ ପାରିବ ତେବେ ତମର ମୁଣ୍ଡ କାଟି ହେବ ।'

ତପନ ରାଜାଙ୍କ ଆଦେଶ ଶୁଣି ଆଉ କରେ କ'ଣ ? ସେ କାନ୍ଦି କାନ୍ଦି ଯାଇ ଘୋଡ଼ାଶାଳରେ ପହଞ୍ଚିଲା । ଗୋଟାଏ କଣରେ ବସି କାନ୍ଦୁଥାଏ । ତା କାନ୍ଦ ଦେଖି ତା କୁଜା ଘୋଡ଼ା ତା ପାଖରେ କୁଦି କୁଦି, କାନକୁ ପିଟିପିଟି କହିଲା, 'ସାନ ମାଲିକେ, ତମେ କାହିଁକି କାନ୍ଦୁଛ ? ତମ କାନ୍ଦ ଦେଖି ମୋ ମନ କଷ୍ଟ ହେଉଛି । ତମର କ'ଣ ହେଇଛି ?

ତପନ କୁଜା ଘୋଡ଼ାକୁ କୋଳରେ ବସାଇ ରାଜାଙ୍କ ଆଦେଶ କଥା କହିଲା । ସବୁ ଶୁଣି କୁଜା କହିଲା, 'ଏଇ କଥା ! ହଉ, ହଉ, ତମେ ଲୁହ ପୋଛି ପକାଇ ଯାଅ ଭଲକରି ଖିଆପିଆ କର । ମୁଁ ସବୁ ଠିକ୍ କରିଦେବି । ତମେ ଖାଲି ରାଜାଙ୍କ ପାଖକୁ ଯାଇ ତିନୋଟି

Digitized by srujanika@gmail.com

ସୁନାର ଧାନ, ଟିଣେ ରୁପାର କୁଣ୍ଡା ଆଉ ଖଣ୍ଡେ ସୁନାର ଦଉଡ଼ି ମାଗି ଆଣ ।'

ତପନ ଯାଇ ରାଜାଙ୍କ ପାଖରୁ ସେସବୁ ନେଇ ଘୋଡ଼ାଶାଳକୁ ଫେରିଆସିଲା । ସେଇଠୁ କୁଜା କହିଲା, 'ଏଥର ମନ ଖୁସିରେ ଶୋଇପଡ଼ । ସକାଳୁ ଉଠି କ'ଣ କରିବା ଠିକ୍ କରିବା । ସଂଜ ଅପେକ୍ଷା ସକାଳେ ମୁଣ୍ଡ ଥଣ୍ଡା ଥାଏ ।'

ତା କଥା ଶୁଣି ବୋକା ତପନ ଖାଇପିଇ ଶୋଇପଡ଼ିଲା । ପରଦିନ ବଡ଼ ଭୋରରୁ କୁଜା ଉଠି କହିଲା, 'ସାନ ମାଲିକେ, ଉଠ, ଉଠ, ମୋ ପିଠି ଉପରେ ବସିପଡ଼ । ମୋ ଲମ୍ବା କାନକୁ ଜାବୋଡ଼ି କରି ଧରିଥିବ । ତମ ଧାଙ୍ଗରେ ରାଜା ଦେଇଥିବା ସୁନା ଧାନ, ରୁପା କୁଣ୍ଡା ଆଉ ସୁନା ଦଉଡ଼ି ନେଇ ଚାଲ । ଆମକୁ ବହୁତ ଦୂରବାଟ ଯିବାକୁ ହେବ ।

ତପନ ସବୁ ଜିନିଷ ନେଇ କୁଜା ପିଠିରେ ବସିଲା । କୁଜା ତା'ପରେ ତିନିଥର ହୁଁ କାର ମାରି ତା ଆଗ ଗୋଡ଼କୁ ଲମ୍ବେଇ ଶର ପରି ସାଏଁ କରି ଉଡ଼ିଗଲା । କାହିଁ କେତେ ବଣ, ବିଲ, ନଦୀ, ପାହାଡ଼, ସହର, ବଜାର ଡେଇଁ ଆଖି ପିଛୁଳାକେ ଯାଇ ଦକ୍ଷିଣ ଦେଶର କୋଉଠାଏ ପାହାଡ଼ ପାଖରେ ପହଞ୍ଚିଗଲା ।

କୁଜା କହିଲା, 'ସାନ ମାଲିକେ, ଆମେ ଆସି ଦକ୍ଷିଣ ଦେଶରେ ପହଞ୍ଚିଗଲେ । ଏଇଠି ମିଳିବ ସେ ସୁନାର ଗାଈ ଆଉ ତାର କୋଡ଼ିଏଟା ବାଛୁରି । ସେ ଗାଈ ସବୁଦିନ ଏଇ ପାହାଡ଼ ପାଖକୁ ଚରିବାକୁ ଆସେ । ତା ସାଙ୍ଗରେ ତା ବାଛୁରିଯାକ ଥାନ୍ତି । ତମେ ଗୋଟିଏ କାମ କର । ସୁନା ଧାନ ଆଉ ରୁପା କୁଣ୍ଡାକୁ

Digitized by srujanika@gmail.com

ଅଲଗା ଅଲଗା ଗଦା କରିଦିଅ । ଯେତେବେଳେ ସେ ସୁନା ଗାଈ ଆସିବ ସେ ପ୍ରଥମେ ସୁନା ଧାନ ଖାଇବାକୁ ଲାଗିବ । ତା ବାଛୁରି-ମାନେ ଦୂରରେ ଗଦା ହୋଇଥିବା ରୂପାକୁଣ୍ଡାକୁ ଖାଇବେ । ତମେ ଲୁଚିକରି ବସିଥିବ । ଯେମିତି ସେ ବାଛୁରିମାନେ ଆସି କୁଣ୍ଡା ଖାଇବେ ତମେ ସେମାନଙ୍କୁ ସୁନା ଦଉଡ଼ିରେ ବାନ୍ଧିଆଣି ମୋ । ବେକରେ ବାନ୍ଧି ଦେବ । ଏତକ କରିସାରି ତମେ ଚଟ୍‌ପଟ୍ ମୋ ପିଠି ଉପରେ ବସିପଡ଼ିବ । ବାଛୁରିମାନେ ଆସିଲେ ତାଙ୍କ ବଳେ ବଳେ ବାଛୁରିଙ୍କ ସାଙ୍ଗରେ ଆମ ପଛରେ ଆସିବ ।

ସେଇଠୁ ତପନ କୁଜାଘୋଡ଼ା କହିବା ଅନୁସାରେ ସବୁ କରିସାରି ମାଖରେ ଥିବା ଗୋଟାଏ କୁଦ ପାଖରେ ଲୁଚି ବସିଲା । ଯେମିତି ସନ୍ଧ୍ୟା ହେଲା ସୁନା ଗାଈ ଦମ୍ଭାଳ ଦମ୍ଭାଳ ଆସିଲା । ସେ ସୁନାର ଧାନ ଦେଖି ତାକୁ ଖାଇବାକୁ ଲାଗିଗଲା । ଆଉ ତା କୋଡ଼ିଏଟା ବାଛୁରି ଆଗପଛ ହୋଇ ଦଉଡ଼ି ଦଉଡ଼ି ଆସି ରୂପାର କୁଣ୍ଡା ଖାଇଲେ । ଏଇ ସମୟରେ ବୋକା ତପନ ଗୋଟାକ ପରେ ଗୋଟାଏ, ଏମିତି ସବୁଯାକ ବାଛୁରି ସୁନା ଦଉଡ଼ିରେ ବାନ୍ଧିଆଣି କୁଜା ଘୋଡ଼ା ବେକରେ ବାନ୍ଧି ଦେଲା । ତା'ପରେ ସେ ନିଜେ ଚଟ୍ କରି କୁଜା ପିଠି ଉପରେ ବସି ପଡ଼ିଲା । ଯେମିତି କୁଜା ଦୌଡ଼ିବାକୁ ଆରମ୍ଭ କରିଛି, ସୁନା ଗାଈ ତା ବାଛୁରିମାନଙ୍କୁ ତା ସହିତ ଯିବାର ଦେଖି ରାଗରେ ତା ରୂପା ଶିଙ୍ଗକୁ ହଲେଇ ହଲେଇ ତାଙ୍କ ପଛରେ ଦୌଡ଼ିବାକୁ ଲାଗିଲା ।

କୁଜା ଘୋଡ଼ା ପବନ ବେଗରେ ଆଖି ପିଛୁଳାକେ ଆସି ରାଜାଙ୍କ ନଅରରେ ପହଞ୍ଚିଲା । ଆଉ ତା ସାଙ୍ଗରେ ସୁନାର ବାଛୁରି ଓ ପଛରେ ସୁନା ଗାଈ ବି ଆସି ପହଞ୍ଚିଲେ । ରାତି ଅଧରେ

Digitized by srujanika@gmail.com

ସେମାନେ ପହଞ୍ଚି ଘୋଡ଼ା ଶାଳରେ ସେମାନଙ୍କୁ ବାନ୍ଧି ବୋକା ତପନ ମନ ଖୁସିରେ ଶୋଇକରି ଘୁଙ୍ଗୁଡ଼ି ମାରିଲା ।

ତା ପରଦିନ ସକାଳୁ ତପନ ଯାଇ ରାଜାଙ୍କୁ ଗାଈ ଓ ବାଛୁରୀମାନଙ୍କୁ ଭେଟି ଦେଲା । ରାଜା ତ କାବା ! ସେ ତପନକୁ ନାହିଁ ନ ଥିବା ପ୍ରଶଂସା କଲେ । ତା ଦେଖି ବୋକା ତପନର ଖଟକୁହାଯାକ ତ ରାଗରେ ଜଳିଗଲେ । ତାଙ୍କ ଦେହ ସହୁଛି କେମିତି ?

ତା'ପରେ ସେମାନେ ପୁଣି ଏକାଠି ହୋଇ ତପନକୁ କେମିତି ହଇରାଣ କରିବେ ସେକଥା ବିଚାର କଲେ । ସେମାନେ ଯାଇ ରାଜାଙ୍କୁ କହିଲେ, 'ମହାରାଜ, ତପନ କହୁଛି ସେ ତ ସୁନାର ସାତଟା କେଶର ଥିବା ଘୋଡ଼ୀ ଆଉ ତାର ସୁନାର ଘୋଡ଼ାଛୁଆଙ୍କୁ ବି ଆଣିଦେଇ ପାରିବ । ସୁନାର ଗାଈ ତ ଛାର କଥା । ସେ ସୁନାର ଘୋଡା ଅତି ଥଣ୍ଡା ଉତ୍ତର ଦେଶରେ ମିଳିପାରିବ ।'

ତାଙ୍କ କଥା ଶୁଣି ରାଜା ତ ରାଗିଗଲେ । ସେ ବୋକା ତପନକୁ ସାଙ୍ଗେ ସାଙ୍ଗେ ଡକେଇ ପଠେଇ ସୁନାର ସାତଟା କେଶର ଥିବା ସୁନା ଘୋଡ଼ୀ ଆଉ ତା ଛୁଆମାନଙ୍କୁ ଆଣିବାକୁ ଆଦେଶ ଦେଲେ । ରାଜା କହିଲେ, 'ଯଦି ତମେ ସାତଦିନ ଭିତରେ ଏହାକୁ ଆଣି ନ ପାରିବ ତେବେ ତମର ମୁଣ୍ଡ କାଟ ହେବ ।'

ରାଜାଙ୍କ କଥା ଶୁଣି ତପନ ମହା ବିପଦରେ ପଡ଼ିଲା । ସେ କାନ୍ଦ କାନ୍ଦ ଆସି ତା କୁଜା ଘୋଡ଼ାକୁ ସବୁ କଥା କହିଲା । କୁଜା କହିଲା, 'ଏଇ କଥା ! ସାନ ମାଲିକେ ତମେ ଜମା ବ୍ୟସ୍ତ ହୁଅନି । ଏ ସେମିତି କିଛି ଭାରି କଷ୍ଟ କାମ ନୁହେଁ । ମୁଁ ସବୁ ଠିକ୍ କରିଦେବି । ତମେ ଖାଲି ରାଜାଙ୍କ ପାଖକୁ ଯାଇ ଗୋଟାଏ

Digitized by srujanika@gmail.com

ପଥରର ଘୋଡ଼ାଶାଳ ତିଆରିକରିବାକୁ କୁହ, ଆଉ ରାଜାଙ୍କଠାରୁ ଗୋଟାଏ ଘୋଡ଼ା ଗୁଳ ଓ ଗୋଟାଏ ଗୃଳଣି ସେର ଓଜନର ହାତୁଡ଼ି ମାଗିଆଣ । ତା'ପରେ ମୁଁ ମୋ କାମ କରିବ ।

ତପନ ଯାଇ ରାଜାଙ୍କୁ ସବୁ କହିଲା । ରାଜା ସାଙ୍ଗେ ସାଙ୍ଗେ ପଥର ଘରର ବନ୍ଦୋବସ୍ତ ଦେଇ ତପନକୁ ଘୋଡ଼ା ଗୁଳ ଆଉ ହାତୁଡ଼ି ଦେଇଦେଲେ । ତପନ ସବୁ ଆଣି ସଞ୍ଜବେଳୁ ଖାଇପିଇ ଶୋଇ ପଡ଼ିଲା । ପରଦିନ ବଡ଼ ସକାଳୁ କୁଜା ତପନକୁ ଉଠାଇ କହିଲା, 'ଏଥର ସବୁ ଜିନିଷ ଆଣି ମୋ ପିଠି ଉପରେ ବସିପଡ଼ ।'

ତପନ ତା ପିଠିରେ ବସିବାରୁ କୁଜା ଆଖିପିଛୁଳାକେ କେତେ ବଣ, ପାହାଡ, ନଦୀ, ସହର ଡେଇଁ ଯାଇ ତିନି ଦିନରେ ଉତ୍ତର ଦେଶରେ ପହଞ୍ଚିଲା । ସେ ତପନକୁ କହିଲା, 'ସାନ ମାଲିକେ, ଏଇଠି ସେ ଘୋଡ଼ୀ ମିଳିବ । ତମେ ଯେଉଁ ଘୋଡ଼ା ଗୁଳ ଆଣିଛ ତାକୁ ମୋ ଉପରେ ସିଲେଇ କରିଦିଅ । ସେ ଘୋଡ଼ୀ ଯେମିତି ଆସି ମୋ ଦେହରେ ତା ଦାନ୍ତ ଲଗେଇ ଗୁଳକୁ ଟାଣିବ, ସେମିତି ତମେ ସେ ଗୃଳଣି ସେରିଆ ହାତୁଡ଼ିରେ ତା ଦୁଇ କାନ ପାଖକୁ ଜୋରରେ ପିଟିବ, ତା ହେଲେ ତା କାନକୁ ଆଉ କିଛି ଶୁଭିବ ନାହିଁ । ତାପରେ ତମେ ଚଟ୍‌କରି ମୋ ଉପରେ ବସି ସେ ଘୋଡ଼ୀକୁ ବାନ୍ଧି ନେଇ ଆସିବ । ତା ଛୁଆମାନଙ୍କ ପାଇଁ ବ୍ୟସ୍ତ ହେବନି, ସେମାନେ ତାଙ୍କ ମା ପଛରେ ଚଳେ ଆସିବେ ।

ତପନ ସେଇଠୁ କୁଜା କହିବା ପରି ତାକୁ ଘୋଡ଼ା ଗୁଳରେ ସିଲେଇ କରି ଅପେକ୍ଷା କଲା । କିଛି ସମୟ ପରେ ସୁନା ଘୋଡ଼ୀ ତା ଛୁଆମାନଙ୍କ ସାଙ୍ଗରେ ଆସି ପହଞ୍ଚିଲା । କ'ଣଟା ଗଢ଼ୁଛି ବୋଲି ଦେଖିବାକୁ ସେ କୁଜା ଘୋଡ଼ା ସିଲେଇ ହୋଇଥିବା ଗୁଳକୁ

Digitized by srujanika@gmail.com

ଦାନ୍ତରେ କାମୁଡ଼ିଲା । ତା ଭାଇମାନେ ଦୂରରୁ ତାକୁ ଦେଖୁଥାନ୍ତି । ସେ ଯେମିତି କାମୁଡ଼ୁଛି ବୋକା ତପନ ସେମିତି ଯାଇ ତା କାନକୁ ହାତୁଡ଼ିରେ ଜୋରରେ ପିଟିବାକୁ ଲାଗିଲା । ଘୋଡ଼ୀକୁ ଆଉ କିଛି ଦେଖା ଗଲାନାହିଁ କି ଶୁଣାଗଲା ନାହିଁ । ସେଇଠୁ ତପନ ତାକୁ ବାନ୍ଧିଆଣି କୁଜା ପିଠିରେ ବସି ଦଉଡ଼ିଲା । ମା ପିବାର ଦେଖି ଘୋଡ଼ାଛୁଆଯାକ ତା ପଛରେ ଗୋଡ଼ାଇଲେ । ଏମିତି ଆସି ଆସି ତିନିଦିନ ପରେ ସେମାନେ ରାଜାଙ୍କ ନଅରରେ ରାତି ଅଧରେ ପହଞ୍ଚି ପଥର ଘୋଡ଼ାଶାଳରେ ସେ ସୁନା ଘୋଡ଼ୀ ଆଉ ତା ଛୁଆଙ୍କୁ ପୂରାଇ ତପନ ମହା ଆନନ୍ଦରେ ଶୋଇ ଘୁଙ୍ଗୁଡ଼ି ମାରିଲା । ସକାଳୁ ଉଠି ସେ ରାଜାଙ୍କୁ ଡାକି ସାତଟା ସୁନା କେଶର ଥିବା ସୁନା ଘୋଡ଼ୀ ଆଉ ତା ସାତଟା ଯାକ ଛୁଆଙ୍କୁ ଦେଖାଇଲା ।

ରାଜାତ ତାକୁ ଦେଖି ଭାରି ଆଶ୍ଚର୍ଯ୍ୟ ହେଲେ. ଏବଂ ଭାରି ଖୁସି ବି ହେଲେ । ସେ ତପନକୁ ତାଙ୍କର ସେନାପତି କରିବାକୁ ଠିକ୍ କଲେ । ତା ଦେଖି ସେ ଦୁଷ୍ଟ, ଖଚକୁହାଙ୍କ ମନ ତ କ'ଣ ହୋଇଗଲା । ସେମାନେ ରାଜାଙ୍କୁ ଯାଇ କହିଲେ 'ମହାରାଜ, ଆପଣ ଏତିକରେ ସନ୍ତୁଷ୍ଟ ହୋଇଗଲେ ? ତପନ କହୁଛି ସେ ତ ଇଚ୍ଛା କଲେ ଆପଣଙ୍କ ପୃଥିବୀର ସବୁଠାରୁ ସୁନ୍ଦରୀ ଝିଅକୁ ସେଇ ପୂର୍ବ ଦେଶରେ, ଯେଉଁଠି ସୂର୍ଯ୍ୟ ପ୍ରଥମେ ସମୁଦ୍ର ଭିତରୁ ଉଦୟ ହୁଅନ୍ତି. ସେଠୁ ଆଣିଦେଇ ପାରିବ ? ସେ ଝିଅ ସେ ଦେଶରେ ସମୁଦ୍ର ଭିତରେ ସୁନା ବୋଇତରେ ବସି. ରୂପା ଆହୁଲାରେ କାତ ମାରି ମାରି ସମୁଦ୍ର ସାରା ବୁଲୁଛି । ସେ ଯଦି ସେ ଝିଅକୁ ଆପଣଙ୍କ ଆଣିଦେଇ ପାରିବ, ତେବେ ଯିନା ତାର ବାହାଦୂରୀ !'

ରାଜା ଅବୁଝା ଲୋକ, ଯାହା ବୁଝିଥିବେ ସେଇଆ । ସେମାନଙ୍କ କଥା ଶୁଣି ସେ ତପନକୁ ଡାକି କହିଲେ, ଯଦି ଦଶଦିନ

Digitized by srujanika@gmail.com

ଭିତରେ ସେ ସେଇ ସୁନ୍ଦରୀ ଝିଅକୁ ଆଣିଦେଇ ନ ପାରିବ, ତେବେ ତାର ନିଶ୍ଚୟ ମୁଣ୍ଡକାଟ ହେବ ।

ତପନ ରାଜାଙ୍କ ଆଦେଶ ଶୁଣି ବଡ଼ ମନଦୁଃଖରେ ଆସି କୁଜାକୁ ସବୁ କହିଲା । କି ବିପଦରେ ସେ ପଡ଼ିଲା ସତେ ! ତା କଥା ଶୁଣି କୁଜା କହିଲା, "ସାନ ମାଲିକେ, କିଛି ଭାବନା କରନାହିଁ । ମୁଁ ସବୁ ଠିକ୍ କରିଦେବି । ତମେ ରାଜାଙ୍କ ପାଖକୁ ଯାଇ ତାଙ୍କୁ କୁହ ଯେ ତମର ଦୁଇଟା ଦାମୀ ରୁମାଲ ଦରକାର, ଯେଉଁଥିରେ ସୁନାର ଭାରି ସୁନ୍ଦର ଛୁଞ୍ଚିକାମ ହୋଇଥିବ । ଆଉ ଗୋଟାଏ ସିଲ୍କ ତମ୍ବୁ, ସେଥିରେ ବି ସୁନାର ସୁତା ବଣା ହୋଇଥିବ ଓ ସୁନାକାମ ହୋଇଥିବ । ଆଉ ବହୁପ୍ରକାର ଭଲ ସୁସ୍ୱାଦୁ ଖାଇବା ଜିନିଷ ସୁନା ଓ ରୁପାଥାଳିରେ ସଜାଡ଼ିକରି ଦେବେ । ତେବେ ଯାଇ ତମେ ସେ ସୁନ୍ଦରୀ ଝିଅକୁ ଆଣି ପାରିବ ।" ତପନ ଯାଇ କୁଜା କହିବା ଜିନିଷ ସବୁ ରାଜାଙ୍କ ପାଖରୁ ନେଇ ଆସିଲା ।

ଖାଇ ପିଇ ଶୋଇ, ତା ପରଦିନ ବଡ଼ ସକାଳୁ କୁଜା ଘୋଡ଼ା ତପନକୁ ନେଇ ବାହାରିଲା । ପାଞ୍ଚ ଦିନ, ପାଞ୍ଚ ରାତି କାଳ ଯିବା ପରେ ସେମାନେ ଯାଇ ପୃଥିବୀର ଶେଷରେ ପୂର୍ବ ଦେଶରେ ଯେଉଁଠି ପ୍ରଥମେ ସୂର୍ଯ୍ୟ ଉଦୟ ହୁଏ ସମୁଦ୍ର ଭିତରୁ ସେଇଠି ପହଞ୍ଚିଲେ । ତପନ କୁଜା ପିଠିରୁ ଓହ୍ଲାଇ ଚାରିଆଡ଼ ବୁଲି ଦେଖିଲା ।

କୁଜା କହିଲା 'ସାନ ମାଲିକେ, ଏଥର ତମ ତମ୍ବୁକୁ ଏଇ ସମୁଦ୍ର ବାଲିରେ ଖୋଲି ପକାଅ । ତା ଭିତରେ ଯେଉଁ ରୁମାଲ ଆଣିଛ ତାକୁ ବିଛାଇ ଦେଇ ସୁନା ଆ ରୁପା ଥାଳିରେ ଖାଇବା ଜିନିଷସବୁ ସଜାଡ଼ି ରଖ । ସେ ସୁନ୍ଦରୀ ଝିଅ ତା ସୁନା ବୋଇତରୁ ତମ ସୁନା ତମ୍ବୁ ଦେଖି ଆସି ଏଠି ଓହ୍ଲାଇବ । ତମେ ତାଙ୍କୁ

Digitized by srujanika@gmail.com

ତମ୍ବୁ ଭିତରକୁ ଯାଇ ସୁନା ଆଉ ରୁପା ଥାଳରୁ ସବୁ ଖାଇବା ଜିନିଷ ଖାଇବା ପାଇଁ ଗୁଣ୍ଡେଦେବ । ସେ ଖାଇ ସାରିଲେ ତମେ ଛକ ଛକ ଯାଇ ତାକୁ ଧରି ପକାଇ ମୋତେ ଡାକ ପକାଇବ । ସବୁ କହିସାରି କୁଜା ବଣ ଭିତରକୁ ଚରିବାକୁ ଚାଲିଗଲା ।’

ତପନ ତାପରେ ତମ୍ବୁ ପକାଇଲା, ଖାଇବା ଜିନିଷ ସବୁ ସୁନା ଥାଳରେ ସଜାଡ଼ି, ରୁମାଲ ବାନ୍ଧି ତା ଉପରେ ରଖିଲା । ସେ ନିଜେ ତମ୍ବୁ କାହାରେ ଲୁଚିକରି ବସି ରହିଲା । କିଛି ସମୟ ପରେ ସମୁଦ୍ରରେ ସୁନା ବୋଇତରେ ରୁପାର ଆହୁଲା ମାରି ମାରି ସେ ସୁନ୍ଦରୀ ଝିଅ ଆସିଲା । ସେ ଦୂରରୁ ଏ ସୁନ୍ଦର ସୁନାର ତମ୍ବୁ ଦେଖି ଆଶ୍ଚର୍ଯ୍ୟ ହୋଇ କୂଳକୁ ଆସିଲା । ତମ୍ବୁ ପାଖରେ ପହଞ୍ଚି କାଏ କୁଆଡ଼େ ନ ଥିବାର ଦେଖି ସେ ତା ଭିତରକୁ ଯାଇ ଥାଳିରେ ଥିବା ଖାଇବା ଜିନିଷ ସବୁ ଖାଇଲା । ବୋକା ତପନ ଏମିତିକା ସୁନ୍ଦରୀଆ ଝିଅ ତା ଜୀବନରେ କେବେ ବି ଦେଖି ନ ଥିଲା । ସେ ତାକୁ ଦେଖି ଏତେ ଭୋଳ ହୋଇଗଲା ଯେ ସେ ଝିଅ ଖାଇପିଇ ସାରି ପୁଣି ତା ବୋଇତରେ ବସି ଚାଲିଗଲା, ତଥାପି ତପନର ଆଖିର ପଲକ ପଡ଼ିଲା ନି । ଯେତେବେଳେ ସେ ଚାଲିଗଲା ତପନର ହୋସ ଆସିଲା, କିନ୍ତୁ ଝିଅ ତ ପଳାଇଗଲା । ସେ ଧରିବ କାହାକୁ ? ସେ ହୋ ହୋ, କାନ୍ଦ ପକାଇଲା । କୁଜା ଘୋଡ଼ା ବଣରୁ ଦଉଡ଼ି ଆସି ଦେଖିଲା ବେଳକୁ ତପନ ବସି କାନ୍ଦୁଛି ।

ତପନ କହିଲା ‘ମୁଁ ବଡ଼ ଭୁଲଟାଏ କରି ପକାଇଲି, ଆଉ ତ ସେ ସୁନ୍ଦରୀକୁ ପାଇବି ନାହିଁ ।’’

କୁଜା କହିଲା ‘ହଉ, ବ୍ୟସ୍ତ ହୁଅନି, ସେ ପୁଣି କାଲି ଆସିବ, ତମେ ଖାଇବା ଜିନିଷ ଆଜପରି ସଜାଡ଼ି ରଖ । କିନ୍ତୁ କାଲି ଯଦି

Digitized by srujanika@gmail.com

ତମେ ଭୁଲ କରିବ, ତେବେ ତମେ ଆଉ ତାକୁ ପାଇବ ନାହିଁ, ତମର ମୁଣ୍ଡକାଟ ବି ହେବ ।'

ତା ପରଦିନ ତପନ ପୁଣି ସବୁ ସଜାଡ଼ି ଆଗପରି ଜଗି ରହିଲା । ଏଥର ସେ ଭିତର ଦୁଆରରେ ଥାଏ । ଯେମିତି ସେ ସୁନ୍ଦରୀ ଝିଅ ଆସି ଖାଇବାକୁ ଆରମ୍ଭ କଲା, ବେଳ ବୁଝି ତପନ ଚଟ୍‌କରି ଆସି ତାକୁ ଧରି ପକାଇ ତା କୁଜା ଘୋଡ଼ାକୁ ଡାକ ପକାଇଲା । ସେ ସୁନ୍ଦରୀ ଝିଅ ଯେମିତି ଦେଖିଲା ବୋକା ତପନ ବି ତା ପରି ଭାରି ସୁନ୍ଦର, ସେ ଆଉ ତା ପାଖରୁ ପଳାଇବାକୁ ଚେଷ୍ଟା କରିଲା ନାହିଁ ।

ବୋକା ତପନ ଆଉ ସେ ସୁନ୍ଦରୀ ଝିଅ କୁଜା ଘୋଡ଼ା ଉପରେ ବସି ପାଞ୍ଚଦିନ ପରେ ରାଜାଙ୍କ ପାଖରେ ପହଞ୍ଚିଲେ । ତପନ ବଡ଼ ମନ କଷ୍ଟରେ ସେ ଝିଅକୁ ରାଜାଙ୍କୁ ଦେଲା । ରାଜା ତ ସେ ଝିଅକୁ ଦେଖି ପାଗଳ ଭଳି ହୋଇଗଲେ । ଏଡ଼େ ସୁନ୍ଦରୀ ସେ ଆଗରୁ କୋଉଠି ବି ଦେଖି ନ ଥିଲେ । ତାଙ୍କର ବୟସ ହୋଇଥିଲେ ବି ସେ ତାକୁ ବାହାହେବାକୁ ଠିକ୍ କଲେ । କିନ୍ତୁ ସେ ସୁନ୍ଦରୀ ଝିଅ ବୁଢ଼ା ରାଜାଙ୍କୁ ବାହାହେବାକୁ ଜମା ରାଜି ହେଲା ନାହିଁ । ସେ କହିଲା, 'ମହାରାଜ, ଆପଣ ଯଦି ପୁଣି ଯୁବକ ହେବେ, ତେବେ ମୁଁ ଆପଣଙ୍କୁ ବାହାହେବି ।'

ରାଜା କହିଲେ, 'ବୟସ କମାଇବାର କ'ଣ ଉପାୟ ଅଛି ?'

ସେ ଝିଅ କହିଲା, 'ଅଛି । ତିନୋଟା ବଡ଼ ବଡ଼ କୁଣ୍ଡ ରଖିବ । ଗୋଟାଏ କୁଣ୍ଡରେ ଥଣ୍ଡାପାଣି, ଆଉ ଗୋଟାକରେ ଫୁଟନ୍ତାପାଣି ଓ ଅନ୍ୟଟିରେ ଫୁଟନ୍ତା କ୍ଷୀର ରଖିବ । ଯେ ଗୋଟିଏ ମିନଟ ଫୁଟନ୍ତା କ୍ଷୀରରେ ବୁଡ଼, ଦୁଇ ମିନଟ ଗରମ ପାଣିରେ ବୁଡ଼, ତା'ପରେ

Digitized by srujanika@gmail.com

ତିନି ମିନିଟ ଥଣ୍ଡା ପାଣିରେ ବୁଡ଼ିବ, ସେ ସାଙ୍ଗେ ସାଙ୍ଗେ ଜଣେ ସୁନ୍ଦର ଯୁବକ ହୋଇଯିବ । ଆପଣ ଯଦି ମୁଁ କହିବା ଅନୁସାରେ କରି ପାରିବେ, ତେବେ ମୁଁ ଆପଣଙ୍କର ରାଣୀ ହେବି ।'

ରାଜା, ସେ ସୁନ୍ଦରୀ ଝିଅକୁ ବାହାହେବେ ବୋଲି ବୁଦ୍ଧି ହରେଇଥିଲେ । ତେଣୁ ସେ ସାଙ୍ଗେ ସାଙ୍ଗେ ତିନୋଟି କୁଣ୍ଡ ଆଣି ପାଣି ଓ କ୍ଷୀର ପୂରାଇବାକୁ ଆଦେଶ ଦେଲେ । କିନ୍ତୁ ବୋକା ତପନର ଖଟକୁଦା ଦେଖି ଆସି ରାଜାଙ୍କୁ କହିଲେ, 'ମହାରାଜ, ଗରମ କ୍ଷୀର ଓ ପାଣିରେ ପଡ଼ିଲେ ତ ମଣିଷ ମରିଯିବା କଥା ।'

ଆପଣ ଆଗ ଆପଣଙ୍କ କୁଜା ଘୋଡ଼ା ମାଲିକକୁ କୁହନ୍ତୁ ସେ ପାଣିରେ ବୁଡ଼ିବାକୁ । ସେ ଯଦି ସେଥିରେ ବୃଡ଼ି ବାହାରି ଆସିବ, ତେବେ ଯାଇ ଆପଣ ସେଥିରେ ପଶିବେ ।

ରାଜାଙ୍କ ମନକୁ କଥାଟା ଖୁବ ପାଇଲା । ଯିଏ ତାଙ୍କୁ ଏତେ ପ୍ରକାର ନୂଆ ନୂଆ ଜିନିଷ ଆଣି ଦେଇଛି, ସେ ତାର କ୍ଷତି କରିବାକୁ ଠିକ କଲେ । ତେଣୁ ସେ ବୋକା ତପନକୁ ଡାକି ଆଗ ଫୁଟନ୍ତା କ୍ଷୀର, ତାପରେ ଫୁଟନ୍ତା ପାଣି ଓ ପରେ ଥଣ୍ଡା ପାଣିରେ ପଶିବାକୁ ଆଦେଶ ଦେଲେ ।

ରାଜାଙ୍କ ଆଦେଶ ଶୁଣି ତପନ ଖୁବ କାନ୍ଦିଲା । ସେ କହିଲା ରାଜାଙ୍କ ପାଇଁ ମୁଁ ଏତେ କଷ୍ଟ କଲି, ସୁନ୍ଦରୀ ଝିଅ ଆଣିଦେଲି, ଶେଷରେ ମୋତେ ଏଇ ପୁରସ୍କାର ମିଳିଲା ? କିନ୍ତୁ କୁଜା ଘୋଡ଼ା ସବୁ ଶୁଣି କହିଲା 'ସାନ ମାଲିକେ, ତମେ କାନ୍ଦନା, ମୋର ମନ-ଦୁଃଖ ହେଉଛି । ମୁଁ ସବୁ ଠିକ୍ କରିଦେବି । ସେ ରାଜାକୁ ପାଣେ ଦେବି । ମୋ କଥା ମନଦେଇ ଶୁଣ । ଯେତେବେଳେ ତମେ ସେ

Digitized by srujanika@gmail.com

କୁଣ୍ଡରେ ବୁଡ଼ିବା'କୁ ଯିବ ସେତେବେଳେ ତମେ ରାଜାଙ୍କୁ କହିବ ଯେ ତମେ ତମର କୁଜାଘୋଡ଼ାକୁ ଦେଖିବାକୁ ଚାହୁଁଛ ଶେଷଥର ପାଇଁ । ରାଜା ତମ ଶେଷ ଇଚ୍ଛା ପୂରଣ କରିବେ । ଯେତେବେଳେ ସେ ମୋତେ ସେଠାକୁ ନେବେ ମୁଁ ତିନିଥର ସେ କୁଣ୍ଡ ଚାରିପାଖରେ ବୁଲି, ସେ ଗରମ କ୍ଷୀର ଓ ଗରମ ପାଣିରେ ମୁହଁ ବୁଡ଼ାଇ ତମ ଦେହରେ ଛିଞ୍ଚିଦେବି । ତମେ ସାଙ୍ଗେ ସାଙ୍ଗେ ଟିକେ ବି ଡେରି ନ କରି, ସବୁ କୁଣ୍ଡ ଭିତରେ କୁଦି ବାହାରି ଆସିବ, ତମର କିଛି ହେବ ନାହିଁ । ତମେ ରାଜପୁଅ ପରି ସୁନ୍ଦର ହୋଇଯିବ ।'

କୁଜା, ବୋକା ତପନକୁ କହି ସାରିଛି କି ନାହିଁ ଲୋକେ ତାକୁ କୁଣ୍ଡ ପାଖକୁ ନେବା ପାଇଁ ପହଞ୍ଚିଗଲେ । ସେ କାନ୍ଦୁଣ୍ଡ-ମାନ୍ଦୁଣ୍ଡ ହୋଇଗଲା । ରାଜ୍ୟସାରା ଲୋକେ ରୁଣ୍ଡ ହୋଇଥାନ୍ତି ଦେଖିବାକୁ । ଦୁଇ କୁଣ୍ଡରେ କ୍ଷୀର ଓ ପାଣି ଟଳବଳ ହୋଇ ଫୁଟୁଥାଏ । ଏହି ସମୟରେ ତପନ ତା ଦେହରୁ ଜାମା ଓହ୍ଲାଇ କୁଜା କହିବା ଅନୁସାରେ କରିଲା । ରାଜା କୁଜା ଘୋଡ଼ାକୁ ଆଣିବାକୁ ରାଜି ହେଲେ । କୁଜା ଘୋଡା ଆସି ତା କହିବା ପ୍ରକାରେ ଯେମିତି ତପନ ଉପରେ ପାଣି ଛିଞ୍ଚିଛି, ସେ ସେମିତି କୁଣ୍ଡ-ମାନଙ୍କରେ ବୁଡ଼ି ବାହାରି ଆସିଲା, ତାର କିଛି ହେଲା ନାହିଁ । ସେ ପୂର୍ବ ଅପେକ୍ଷା ଆହୁରି ସୁନ୍ଦର ହୋଇଗଲା । ତା ଦେଖି ସେ ସୁନ୍ଦରୀ ଝିଅ ଭାରି ଖୁସି ହେଲା, କାରଣ ସେ ବି ଇଚ୍ଛା କରୁଥିଲା ତପନକୁ ବାହା ହେବା ପାଇଁ ।

ତାପରେ ରାଜାଙ୍କ ପାଳି । ତପନର କିଛି ନ ହେବା ଦେଖି, ଏବଂ ସେ ଆହୁରି ସୁନ୍ଦର ହୋଇଯିବା ଦେଖି ରାଜା ଆଉ କାହାରି କଥାକୁ ଅପେକ୍ଷା ନ କରି ତରବରରେ ଗରମ କ୍ଷୀର ଭିତରକୁ

Digitized by srujanika@gmail.com

ଡେଇଁ ପଡ଼ିଲେ । ରାଜାଙ୍କର କଣ ହେଲା କହିଲ ? ରାଜା ଏକାଥରେ ସ୍ୱର୍ଗଗମନ କଲେ । ଫୁଟନ୍ତା କ୍ଷୀରରେ ପଡ଼ିଲେ କିଏ କ'ଣ ବଞ୍ଚେ ?

ରାଜା ମରିଯିବାରୁ ରାଜ୍ୟର ଲୋକେ ବୋକା ତପନକୁ ତାଙ୍କର ରାଜା ହେବାକୁ ବାଛିଲେ । ତପନ ସୁନ୍ଦରୀ ଝିଅକୁ ବାହା ହୋଇ ମହା ଆନନ୍ଦରେ ରାଜ୍ୟ ଚଳେଇଲା । ସେ ସବୁବେଳେ ସବୁ କଥାରେ ତା କୁଜା ଘୋଡ଼ାର ପରାମର୍ଶ ନିଏ ।

ଏଣିକି ସେ ଆଉ ବୋକା ତପନ ନୁହେଁ । ବୋକା ବଦଳରେ ତାକୁ ଲୋକମାନେ ତପନ ମହାରାଜ ବୋଲି କହୁଥିଲେ । ସୂର୍ଯ୍ୟଙ୍କର ଅନ୍ୟ ନାମ ତପନ । ତପନ ସୂର୍ଯ୍ୟପରି ତେଜସ୍ୱୀ ଥିଲା ଓ ତା ରାଜ୍ୟ ଲୋକେ ତାକୁ ଖୁବ୍ ଆଦର କରୁଥିଲେ ।



Digitized by srujanika@gmail.com




ଦିନେ କେଉଟୁଣୀଟିଏ ତା ଟୋକେଇରେ ଟୋକେଇଏ ମାଛ ଧରି ସକାଳୁ ବିକିବ ବୋଲି ବାହାରିଲା । ସେ ମାଛ, ମାଛ ଡାକି ଡାକି ରଜାଘର ବାଟ ଦେଇ ଯାଉଥାଏ । ଏହି ସମୟରେ ରାଣୀ ତାଙ୍କ ଘରର ଝରକା ବାଟେ ବାହାରକୁ ଚାହିଁଥିଲେ । ସେ କେଉଟୁଣୀକୁ ଦେଖି କି ମାଛ ନେଉଛୁ ବୋଲି ଦେଖିବାକୁ ଡାକି ପଠାଇଲେ । କେଉଟୁଣୀ ରାଣୀଙ୍କ ମହଲକୁ ଆସି ତା ମାଛ ଟୋକେଇକୁ ଖୋଲି ଦେଖାଇଲା । ସେ ମନେ ମନେ ଭାରି ଖୁସି ହେଉଥାଏ ଯେ ରାଣୀ ନିଶ୍ଚୟ ତାଠୁ ବହୁତ ମାଛ କିଣିବେ । ସେ ମାଛ ଟୋକେଇ ଖୋଲିବାରୁ ଗୋଟାଏ ବଡ଼ ମାଛ ଟୋକେଇ ଭିତରୁ ହଠାତ ଉପରକୁ ଡେଇଁ ପଡ଼ିଲା ।

ବଡ଼ ମାଛଟାକୁ ଡେଇଁବାର ଦେଖି ରାଣୀ ପଚାରିଲେ, "ହଇଲୋ ଏଇଟା ମାଈ ନା ଅଣ୍ଡିରା ? ମୋର ଗୋଟାଏ ମାଈ ମାଛ ଦରକାର ।"

Digitized by srujanika@gmail.com

ରାଣୀଙ୍କ କଥା ଶୁଣି ମାଛଟା ଜୋରରେ ହସି ପକାଇଲା ।

କେଉଟୁଣୀ କହିଲା, ନାଇଁ ରାଣୀ ମା, ଏଇଟା ଅଣ୍ଡିରା ମାଛଟାଏ । ସେ ମନେ ମନେ ଚିନ୍ତା କରୁଥାଏ "ମାଛ ତ କିଣିବ, ମାଈ, ଅଣ୍ଡିରାରୁ କ'ଣ ମିଳିବ ? ମାଛ ତ କିଣି ଖାଇବା କଥା ।"

ରାଣୀ ମାଛ ରଖିଲେ ନାହିଁ । କେଉଟୁଣୀ ତା ଟୋକେଇ ନେଇ ଅନ୍ୟଆଡ଼େ ବିକିବାକୁ ଚାଲିଗଲା । ରାଣୀ ତାଙ୍କ ଅନ୍ତଃପୁରକୁ ଫେରିଗଲେ । ତାଙ୍କ ମନଟା ଭାରି ଖରାପ ହୋଇଯାଇଥାଏ । ଛାର ମାଛଟାଏ ତାଙ୍କ କଥା ଶୁଣି ପୁଣି ହସିଲା ! ସେ କମା ସେ କଥା ଭୁଲି ପାରୁ ନ ଥାନ୍ତି । ହନଯାକ ମନମାରି ରହିଥାନ୍ତି । ସଂଜବେଳକୁ ରାଜା ଦରବାରୁ ସାରି ପ୍ରାସାଦକୁ ଫେରିଲେ । ରାଜା ଦେଖିଲେ ରାଣୀ ମୁହଁ ଶୁଖେଇ ବସିଛନ୍ତି । ସେ ପଚାରିଲେ "ରାଣୀ, ତମ ମନ ଭଲ ନାହିଁ କାହିଁକି ? କାହିଁକି ମୁହଁ ଶୁଖେଇ ବସିଛ ?

ରାଣୀ କହିଲେ "ନାଇଁ ଯେ, ଗୋଟାଏ ମାଛ ଆଜି ମୋ କଥାରେ ମୋତେ ଥଟ୍ଟା କରି ହସିଲା । କେଉଟୁଣୀଟିଏ ମାଛ ବିକି ଯାଉଥିଲା । ସେଥିରୁ ଗୋଟାଏ ମାଛକୁ ମୁଁ ମାଈ କି ଅଣ୍ଡିରା ବୋଲି କେଉଟୁଣୀକୁ ପଚାରିଲି । ମୋ କଥା ଶୁଣି ମାଛଟା ହିଁ ହିଁ କରି ହସି ପକାଇଲା । ସେତିକିବେଳଠୁ ମୋ ମନରେ ବଡ଼ ରାଗ ହୋଇଛି । ଛାର ମାଛଟାଏ, ପୁଣି ମୋ କଥାରେ ହସିବ !"

ରାଜା ରାଣୀଙ୍କ କଥା ଶୁଣି କହିଲେ "ମାଛଟା ହସିଲା । ବଡ଼ ଆଚମ୍ବିତ କଥା ତ ! ତମେ କ'ଣ ସ୍ୱପ୍ନ ଦେଖୁଥିଲ କି ?"

ରାଣୀ ଆହୁରି ରାଗିଗଲେ । କହିଲେ ମୋତେ କ'ଣ ବୋକା ମନେ କଲ କି ? ମୁଁ ଯାହା ନିଜ ଆଖିରେ ଦେଖିଲି, ଯାହା

Digitized by srujanika@gmail.com

ନିଜ ଆଖିରେ ଦେଖିଲି, ଯାହା କାନରେ ଶୁଣିଲି, ସେଇଆ କହୁଛି ! ତମେ ପୁଣି ମୋତେ ଥଟ୍ଟା କରୁଛ ?”

ରାଜା କହିଲେ, “ହଉ, ହଉ ରହନ୍ତୁ, କ’ଣ ହୋଇଛି ବୁଝିବା । ମୁଁ ଏ କଥା ପରୁଖ ବୁଝିବି ।”

ତା ପରଦିନ ସକାଳେ ରାଜା ମନ୍ତ୍ରୀଙ୍କି ଡାକି ରାଣୀ କହିଥିବା କଥା ସବୁ କହିଲେ । ଆହୁରି କହିଲେ ଯେ ମାଛ କାହିଁକି ହସିଲା, ସେକଥା ଯଦି ସେ ଛ ମାସ ଭିତରେ ବୁଝି ନ ପାରିବେ, ତେବେ ତାଙ୍କର ମୁଣ୍ଡକାଟ ହେବ । ରାଜା ଠିକେ ରାଗୀ ଲୋକ ! ମନ୍ତ୍ରୀ ତ ରାଜାଙ୍କ କଥା ଶୁଣି ମହା ଭାବନାରେ ପଡ଼ିଲେ । ରାଜାଙ୍କ କଥାରେ କଥା କହିବ କିଏ ? ମାଛଟାଏ ବା ହସିଲା କେମିତି, ପୁଣି ତାର କାରଣଟାଏ କୋଉଠୁ ଆସିବ, କିଏ ସେ କଥା ବୁଝିବ ? ସେ ମାଛ ତ କୁଆଡ଼େ ଗଲାଣି । କାହା ପେଟରେ ତରକାରି ହୋଇ ପଶିସାରିବଣି । ମନ୍ତ୍ରୀ ତାକୁ ଆଉ ପାଇବେ କେମିତି ? ରାଜା ତ ତାଙ୍କୁ ବଡ଼ ଅଡ଼୍ୱାରେ ପକାଇଲେ । ବଡ଼ ମନଦୁଃଖରେ ମନ୍ତ୍ରୀ ଘରକୁ ଫେରିଲେ । ସବୁଆଡ଼େ, ସବୁ ଲୋକଙ୍କୁ ମନ୍ତ୍ରୀ ମାଛ ହସ ବିଷୟରେ ପଚାରିଲେ । କିନ୍ତୁ କେହି କିଛି କହିପାରିଲେ ନାହିଁ । ଏମିତି ଏମିତି ପାଞ୍ଚମାସ ଗଲାଗଲା ।

ମନ୍ତ୍ରୀ ଏଥର ଜାଣିଲେ ଯେ ନିଶ୍ଚୟ ତାଙ୍କର ମୁଣ୍ଡକାଟ ହେବ । ସେଇଠୁ ସେ ତାଙ୍କର ଜମିବାଡ଼ ବିଷୟରେ ସବୁ ବୁଝାବୁଝି କରିବାକୁ ଲାଗିଲେ । ମରିବା ପୂର୍ବରୁ ସବୁକଥା ପୁଅକୁ ବୁଝାଇଦେଲେ । ସବୁ ବୁଝାଇସାରି ଶେଷରେ ସେ ତାଙ୍କ ପୁଅକୁ ଦେଶ ବୁଲିବା ପାଇଁ ପଠାଇଦେଲେ । ସେ ଭାବିଲେ କାଳେ ରାଜା ରାଗରେ ତାଙ୍କ ପୁଅର ମଧ୍ୟ କ୍ଷତି କରି ପାରନ୍ତି ।

Digitized by srujanika@gmail.com

ମନ୍ତ୍ରୀଙ୍କ ପୁଅ ଭାରି ଚାଲାକ, ଦେଖିବାକୁ ମଧ୍ୟ ସୁନ୍ଦର । ସେ ଦେଶ ବୁଲି ବାହାରର କଥା ସବୁ ଜାଣିବାକୁ ବାହାରିଲା । କିଛି ଦିନ ବୁଲିବା ପରେ ମନ୍ତ୍ରୀପୁଅର ଜଣେ ବୁଢ଼ାଋଷି ସାଙ୍ଗରେ ଦେଖା ହେଲା । ବୁଢ଼ା ଋଷି ବି ବୁଲିବାକୁ ବାହାରିଥାଏ । ସେଇଠୁ ଦୁହେଁ ସାଙ୍ଗ ହୋଇ ଯିବେ ବୋଲି ଠିକ୍ କଲେ ।

ଗରମ ଦିନ, ଯିବାକୁ ବହୁତ ବାଟ । ଚାଲି ଚାଲି ଦୁହେଁ ହାଲିଆ ହୋଇ ପଡ଼ୁଥାନ୍ତି ।

ମନ୍ତ୍ରୀପୁଅ ବୁଢ଼ାଋଷିକୁ କହିଲା, 'ଆଚ୍ଛା, ଚାଲିଚାଲି ତ ହାଲିଆ ଲାଗୁଛି, ଯଦି ପାଳକରି ତମେ ମତେ, ଆଉ ମୁଁ ତମକୁ କାନ୍ଧରେ ବସାଇ ବାଟ ଚାଲନ୍ତେ ତେବେ କେମିତି ହୁଅନ୍ତା ?'

ବୁଢ଼ା ଋଷି ମନେ ମନେ ଭାବିଲା, 'କେମିତି ବୋକା ପିଲାଟାଏ ସ ! ମୁଁ ବୁଢ଼ାଲୋକ ତାକୁ କେମିତି କାନ୍ଧରେ ବୋହିବି ?' ହେଲେ ସେ ମୁହଁ ଖୋଲି କିଛି କହିଲା ନାହିଁ ।

ସେମାନେ ବାଟସାରା କଥା ହୋଇ ଚାଲିଥାନ୍ତି । ଯାଉ ଯାଉ ବାଟରେ ଦେଖିଲେ ଜମିରେ ଧାନ ସବୁ ପାଚି ହଳଦିଆ ରଙ୍ଗ ଧରି ଯାଇଛି । ଖାଲି କାଟି ହେବା କଥା । ପାଚିଲା ଧାନ ଗଛ ଦେଖି ମନ୍ତ୍ରୀପୁଅ କହିଲା 'ଆଚ୍ଛା, ଏ ଜମିର ଧାନ ଖିଆ ହୋଇଛି ନା ହୋଇନି କହିପାରିବ ?"

ସେ କ'ଣ ପଚାରୁଛି ବୁଝି ନ ପାରି ବୁଢ଼ା କହିଲା 'କେଜାଣି ମୁଁ ତ ଜାଣିନି ।'

ପୁଣି କିଛି ବାଟ ଯିବାପରେ ସେମାନେ ଯାଇ ଗୋଟାଏ ଗାଁରେ ପହଞ୍ଚିଲେ । ସେଠି ମନ୍ତ୍ରୀପୁଅ ବୁଢ଼ା ଋଷିକୁ ଗୋଟାଏ ବଡ଼

Digitized by srujanika@gmail.com

ଝୁଲା ନେଇ କହିଲା 'ମଉସା, ତମେ ଏଇ ଝୁଲାଟା ନେଇ ଦୁଇଟା ଘୋଡ଼ା କିଣିଆଣ । କିନ୍ତୁ ମନେରଖ ଝୁଲାଟାକୁ ଫେରାଇ ଆଣିବ, ଏଇଟା ଭାରି ମୂଲ୍ୟବାନ ।'

ବୁଢ଼ା ତା କଥା ଶୁଣି ମନେ ମନେ ରାଗୁଥାଏ । ସେ ଭାବୁଥାଏ 'ଏ ଟୋକାଟା ନିଶ୍ଚୟ ଗୋଟାଏ ବୋକା । ନହେଲେ ଏମିତି କଥାବାର୍ତ୍ତା କରୁ ନ ଥାନ୍ତା ।" ତା'ପରେ ସେମାନେ ଆସି ଗୋଟାଏ ସହରରେ ପହଞ୍ଚିଲେ । ସେହି ସହରରେ କିଛି ଦୂରରେ ବୁଢ଼ା ଚାଷୀର ଘର । ସେମାନେ ବଜାର ଭିତରେ ପଶି ସହରରେ ଥିବା ମନ୍ଦିର ବାଟରେ ଗଲେ । ମନ୍ଦିର ବାଟଦେଇ ଗଲାବେଳେ ତାଙ୍କୁ କେହି ଡାକିଲେ ନାହିଁ କି କିଛି ପଚାରିଲେ ନାହିଁ ।

ତା ଦେଖି ମନ୍ତ୍ରୀପୁଅ କହିଲା 'ଆରେ, କେଡ଼େ ବଡ଼ ମଶାଣିଟା ମ !

"ମନ୍ତ୍ରୀପୁଅ କଥା ଶୁଣି ବୁଢ଼ା ଚାଷୀ ଭାବିଲା, 'ଏଇଟା ପାଗଳାଟାଏ ନା କ'ଣ ? ଏଡ଼େବଡ଼ ସହରରେ ଏତେ ଲୋକ ଯା,ଆସ କରୁଛନ୍ତି, ସେ କହୁଛି କ'ଣ ନା ମଶାଣିଟାଏ ?"

ତାପରେ ସେମାନେ ସହର ଛାଡ଼ି ଆସି ସହରର ମଶାଣି ବାଟଦେଇ ଗଲେ । ମଶାଣିରେ କେତେଗୁଡ଼ିଏ କବର ଥାଏ । ସେଇ କବର ପାଖରେ କେତେଗୁଡ଼ିଏ ଲୋକ ତାଙ୍କ ନିଜ ଲୋକଙ୍କ ପାଇଁ ବସି ପ୍ରାର୍ଥନା କରୁଥାନ୍ତି, ଆଉ ଯେଉଁ ଲୋକମାନେ ସେ ବାଟ ଦେଇ ଯାଉଥାନ୍ତି ସେମାନଙ୍କୁ ସେ ଲୋକମାନେ ଜଳଖିଆ ଖାଇବାକୁ ଦେଉଥାନ୍ତି । ସେମାନେ ଏ ବୁଢ଼ା ଚାଷୀ ଆଉ ମନ୍ତ୍ରୀପୁଅକୁ ସେ ବାଟଦେଇ ଯିବାର ଦେଖି ସେ ଦୁହିଁଙ୍କୁ ମଧ୍ୟ କିଛି ଜଳଖିଆ

Digitized by srujanika@gmail.com

ଖାଇବାକୁ ଦେଲେ । ଜଳଖିଆ ଖାଉ ଖାଉ ମଂତ୍ରୀପୁଅ କହିଲା ଆରେ, 'ଏ ସହରରେ କେତେ ଲୋକ ରହୁଛନ୍ତି ସତେ !"

ତା କଥା ଶୁଣି ବୁଢ଼ା ଯେମିତି ଗଛରୁ ପଡ଼ିଲା । ସେ ତାର କାନକୁ ଜମା ବିଶ୍ୱାସ କରିପାରିଲା ନାହିଁ । ସେ ଭାବିଲା ସେ ନିଶ୍ଚୟ ଜଣେ ପାଗଳା ହାବୁଡ଼ରେ ପଡ଼ିଛି । ନହେଲେ ସେ କ'ଣ ସହରକୁ ମଶାଣି, ପୁଣି ମଶାଣିଟାକୁ ଗୋଟାଏ ସହର ବୋଲି କହନ୍ତା ? ଆହୁରି କ'ଣ କ'ଣ ସବୁ କହିବ କେଜାଣି ! ସେ ନିଶ୍ଚୟ ପାଣିକୁ ମାଟି, ମାଟିକୁ ପାଣି କହିବ । ସେ କିନ୍ତୁ ତାକୁ ମୁହଁ ଖୋଲି କିଛି କହିଲା ନାହିଁ ।

ମଶାଣି ପାଖରୁ ସେମାନେ ମଶାଣି ପାଖରେ ଥିବା ଗୋଟାଏ ଝରଣା ଭିତର ଦେଇ ଗଲେ । ଝରଣାଟା ଟିକେ ଗହୀରିଆ । ସେଥିପାଇଁ ବୁଢ଼ା ଚାଷୀ ତା ଜାମାପଟା, ଜୋତା ସବୁ କାଢ଼ି ପାଣି ଭିତରେ ପଶି ଆରପାଖକୁ ଚାଲିଗଲା । ମଂତ୍ରୀପୁଅ କିନ୍ତୁ ତାର ଜୋତା, ଜାମା ସବୁ ପିନ୍ଧି ଝରଣା ଭିତରେ ପାଣିରେ ପଶି ବଡ଼ କଷ୍ଟରେ ଯାଇ ଆର ପାଖରେ ପହଞ୍ଚିଲା ।

ବୁଢ଼ା ଭାବିଲା 'ଏମିତିକା ବୋକା ତ ମୁଁ କୋଉଠି ଦେଖିନ ।' କିନ୍ତୁ ମଂତ୍ରୀପୁଅ ସାଙ୍ଗରେ ଯିବାପାଇଁ ତାକୁ ଭାରି ଭଲ ଲାଗୁଥାଏ । ସେ ଭାବିଲା 'ଏ ବୋକାକୁ ଘରକୁ ଡାକିନେଲେ ମୋ ଝିଅ ତା କଥା ଶୁଣି ନିଶ୍ଚୟ ଭାରି ଖୁସି ହେବ ।" ଏକଥା ଭାବି ସେ ତାକୁ ତା ଘରକୁ ଡାକିଲା କିଛିଦିନ ରହିବାପାଇଁ ।

ମଂତ୍ରୀପୁଅ କହିଲା 'ତମ ନିମନ୍ତ୍ରଣ ପାଇଁ ବହୁତ ଧନ୍ୟବାଦ । ହେଲେ ମତେ ଡାକୁଛ ଯେ, ତମ ଘରର ଚାଳ ମଜବୁତ ତ !"

Digitized by srujanika@gmail.com

ତା କଥା ଶୁଣି ବୁଢ଼ା ବଡ଼ ଚିଡ଼ିଗଲା । ସେ ମନେ ମନେ ତାକୁ ଗାଳି ଦେଇ ହସି ହସି ଘରେ ପହଞ୍ଚିଲା । ସେ ଘରେ ପହଞ୍ଚି ତା ଝିଅକୁ ସବୁ କଥା, ଯାହା ସବୁ ବାଟରେ ମନ୍ତ୍ରୀପୁଅ ତାକୁ କହିଥିଲା, କହିଲା । ବୁଢ଼ା କହିଲା 'ବୁଝିଲୁ ଝିଅ, ଏମିତିକା ବୋକା ଆଉ ମଜାଳିଆ ଲୋକ ମୁଁ ମୋ ଜୀବନରେ ଦେଖିନି । ସେ ପୁଣି ଜାଣିବାକୁ ଚାହୁଁଥିଲା ଯେ ଏ ଘରର ଖୁଣ୍ଟ ମଜବୁତ୍ ନା ନାହିଁ । ବୁଝିଲୁ, ପାଗଳଟାଏ । ମୁଁ ଯେତେ ଡାକିଲି ସେ ମୋଠେ ଆସିଲା ନାହିଁ ।'

ଏ କଥା କହି ବୁଢ଼ା ହସି ହସି ଗଡ଼ିଗଲା । କିନ୍ତୁ ବୁଢ଼ା ଚାଷୀର ଝିଅ ଦେଖିବାକୁ ଯେମିତି ସୁନ୍ଦରୀ, ତା ବୁଦ୍ଧି ବି ସେମିତି ଧାରୁଆ । ସେ କହିଲା, 'ବାପା, ତମେ ସିନା ତାକୁ ବୋକା, ପାଗଳ କହୁଛ, ମୋତେ ଲାଗୁଛି ସେ ତ ସବୁଠୁଁ ବୁଦ୍ଧିଆ । ତମେ ତାକୁ ଘରେ ରଖି ଚଳାଇ ପାରିବ କି ନାହିଁ ବୋଲି ଜାଣିବାକୁ ସେ ତମକୁ ପଚାରୁଥିଲା ତମ ଖୁଣ୍ଟ ମଜଭୁତ କି ନୁହେଁ ।'

ବୁଢ଼ା କହିଲା, 'ହୋଇଥିବ ! ତା'ହେଲେ ତୁ ମତେ ତାର ଅନ୍ୟ ପ୍ରଶ୍ନ ଗୁଡ଼ିକର ଉତ୍ତର ମଧ ଦେଇ ପାରିବୁ । ଆମେ ବାଟରେ ଆସିଲାବେଳେ ସେ କହିଲା, ଯେ ମୋତେ ଏବଂ ମୁଁ ତାକୁ କାନ୍ଧରେ ବୋହିକରି ଚାଲିଲେ ଭଲ ହେବ । ଏ କଥାର ମାନେ କ'ଣ ?'

ଝିଅ କହିଲା, 'ଏ କଥାର ମାନେ ତ ଅତି ସହଜ । ସେ ଚାହୁଁଥିଲା ଯେ ତମେ ଦୁହେଁ ଜଣକପରେ ଜଣେ ଗୋଟାଏ ଲେଖାଁ ଗପ କହିଲେ ସମୟ କଟିବ, ପୁଣି ବାଟଚାଲି ବି ବାଧିବ ନାହିଁ ।

ବୁଢ଼ା କହିଲା, 'ହଁ ସତ ତ ! ଆଚ୍ଛା, ଏହାର ମାନେ ପୁଣି କ'ଣ ? ଯେତେବେଳେ ଆମେ ଗୋଟାଏ ଧାନ ଜମି ପାଖ ଦେଇ

Digitized by srujanika@gmail.com

ଯାଉଥିଲୁ, ସେ ମୋତେ ପଚାରିଲା ଯେ ଏ ଧାନ ଜମିର ଫସଲ ଖିଆ ହୋଇଛି ନା ହୋଇନି ।'

ଝିଅ କହିଲା, 'ବାପା, ତମେ ଏଇ କଥାର ମାନେ ବୁଝିପାରିଲ ନାହିଁ ? ସେ ଜାଣିବାକୁ ଚାହୁଁଥିଲା ଯେ ଜମିର ମାଲିକ କରଜ କରିଛି ନା ନାହିଁ । ଯଦି ଜମିର ମାଲିକ ମହାଜନଠାରୁ କରଜ କରିଥିବ, ତେବେ ଜମିର ଫସଲ ତା ନାଁରେ ଖିଆ ସରିଛି, କାରଣ ଫସଲ ମାଲିକର ନୁହେଁ ମହାଜନର ।"

ବୁଢ଼ା କହିଲା 'ଆରେ, ହଁ, ହଁ, ଯାହା କହିଲୁ ଠିକ୍ । ସେ ଟୋକା ଗୋଟାଏ ଗାଁ ପାଖରେ ମଦନଅ ପଣି ମୋତେ କହୁଥିଲା ଯେ ତା ଛୁରା ନେଇ ଦୁଇଟା ଘୋଡ଼ା ଆଣିବାକୁ, ଆଉ ତା ଛୁରାଟାକୁ ତା ସହିତ ଫେରାଇ ଆଣିବାକୁ ବି କହିଲା ।"

ଝିଅ କହିଲା 'ତମେ ବୁଦ୍ଧିନାଶିଆ ବାପା ! ବାଟରେ ଗଲା-ବେଳେ ଦୁଇଟା ଠାଣୁଆ ବାଡ଼ି କ'ଣ ଦୁଇଟା ଘୋଡ଼ା ସାଙ୍ଗେ ସମାନ ନୁହେଁ । ସେ କହୁଥିଲା, ଛୁରା ନେଇ ଦୁଇଟା ବଡ଼ ବଡ଼ ଠାଣୁଆ ବାଡ଼ି କାଟିଆଣି ତା ଛୁରା ତାକୁ ଫେରାଇ ଦେବାକୁ ।'

ତା ବାପା କହିଲା, 'ହଁ ସେ ସେଇଆ କହୁଥିଲା ବୋଧେ । ଆଚ୍ଛା, ଆମେ ଯେତେବେଳେ ସହର ଭିତରେ ଆସୁଥିଲୁ, ଆମେ ତ କାହାକୁ ଚିହ୍ନି ନ ଥିଲୁ, କି କେହି ସହର ଲୋକ ଆମକୁ ବି ଚିହ୍ନି ନ ଥିଲେ । ସେଥିପାଇଁ ଆମକୁ କେହି କିଛି କହିଲେ ନାହିଁ କି ଖାଇବାକୁ ବି ଯାଚିଲେ ନାହିଁ । କିନ୍ତୁ ଆମେ ଯେତେବେଳେ ମଶାଣି ବାଟରେ ଆସିଲୁ, ସେଠି କେତେଗୁଡ଼ାଏ ଲୋକ ଆମକୁ ପେଟପୂରା ଖାଇବାକୁ ଦେଲେ । ସେଇଠୁ ସେ ଟୋକା ସହରକୁ ଗୋଟାଏ ମଶାଣି ଆଉ ମଶାଣିକୁ ସହର ବୋଲି କହିଲା ।

Digitized by srujanika@gmail.com

ତା ଶୁଣି ଝିଅ କହିଲା ‘ବାପା, ତା ମାନେ ହେଉଛି ଯେ ସହରରେ ଯେଉଁଠି ବହୁତ ଲୋକ ଥାନ୍ତି, ଯେଉଁଠି ସବୁ ଜିନିଷ ମିଳିବା କଥା, ସେଠାରେ ଲୋକମାନେ ଅତିଥି ସେବା ଜାଣନ୍ତି ନାହିଁ । ତେଣୁ ସେ ଜାଗା ମଶାଣିଠାରୁ ବି ହୀନ । ସହରର ଲୋକମାନେ ତମପାଇଁ ମୃତ । କିନ୍ତୁ ମଶାଣିରେ, ଯେଉଁଠି ମୃତ ଲୋକମାନେ ରହନ୍ତି, ସେଠି କେତେଜଣ ଦୟାଳୁ ଲୋକ ତମକୁ ଖାଇବାକୁ ଦେଲେ, ତମ କଥା ବୁଝିଲେ । ସେଥିପାଇଁ ସେ କହିଲି ମଶାଣିକୁ ସହର ବୋଲି ।

ବୁଢ଼ା ଏଥର ବୁଝି ପାରିଲା । ସେ ଭାରି ଆଶ୍ଚର୍ଯ୍ୟ ହୋଇଗଲା ମନେ ମନେ, ଏଇ କଥାଗୁଡ଼ା ଆଗରୁ ବୁଝି ପାରି-ନ.ଥିଲା ବୋଲି, ତା ଝିଅ ବୁଦ୍ଧିକୁ ସେ ଭାରି ତାରିଫ୍ କରୁଥାଏ । ବୁଢ଼ା କହିଲା ‘ବୁଝିଲୁ ଝିଅ, ଶେଷରେ ଆମେ ଯେତେବେଳେ ମଶାଣି ପାଖ ଝରଣା ଭିତରେ ପଶିକରି ଆସିଲୁ, ମୁଁ ମୋର ପୋଷାକ, ଜୋତା ଖୋଲି ପାଣି ଭିତରେ ଆସିଲି, ସେ କିନ୍ତୁ ସେମିତି ଜୋତା, ଜାମା ପିନ୍ଧି କାଦୁଅରେ ଲଟପଟ ହୋଇ ଝରଣା ପାରି ହେଲା ।’

ଝିଅ କହିଲା ‘ବାଃ ଭାରି ବୁଦ୍ଧିମାନ ଲୋକ ତ ! ମୁଁ ତ ସବୁବେଳେ ଭାବେ ଲୋକଗୁଡ଼ା କି ବୋକା, ସେମାନେ କାହିଁକି ଜୋତା, ଜାମା କାଢ଼ି ଝରଣା ଭିତରେ ଆସନ୍ତି ! ଯଦି ପାଣି ଭିତରେ ଧାରୁଆ ପଥର ଉପରେ ଆସିଲାବେଳେ କେଉଁଠି ଟିକଏ ଝୁଣ୍ଟି ପଡ଼ିବେ, ତେବେ ସେମାନେ ଝରଣା ପାଣିରେ ପଡ଼ି ଦେହ ମୁଣ୍ଡ ଓଦା କରିବେ । ବାପା, ତମ ସାଙ୍ଗରେ ଆସିଥିବା ଲୋକ ଜଣକ ଭାରି ବୁଦ୍ଧିଆ ଆଉ ଗୁଣକ୍ । ତମେ ତାକୁ ଆମ ଘରକୁ ଡାକନ୍ତ କି ମୁଁ ତା ସହିତ କଥାବାର୍ତ୍ତା କରନ୍ତି ।”

Digitized by srujanika@gmail.com

ତା ବାପା କହିଲା 'ହଉ, ଯଦି କହୁଛୁ, ତେବେ ମୁଁ ଯାଉଛି ତାକୁ ଖୋଜି ଡାକି ଆଣିବି ।'

ଝିଅ କହିଲା 'ବାପା, ତାଙ୍କୁ କହିବ, ଆମ ଘର ଦ୍ୱାର ମଜବୁତ୍, ଆଉ ସେ ନିଜେ ଆସି ଦେଖି ଯାଆନ୍ତୁ । ତମ ଆଗରେ ମୁଁ ତାଙ୍କ ପାଖକୁ ଖାଇବା ଜିନିଷ ପଠାଇ ଦେଉଛି, ତେବେ ସେ ଜାଣିବେ ଯେ ଆମେ ତାଙ୍କର ଠିକ୍ ଭାବରେ ଯତ୍ନ ନେବାକୁ ସକ୍ଷମ ।'

ତାପରେ ଝିଅ ତା ଚାକରକୁ ଡାକି ତା ହାତରେ ମନ୍ତ୍ରୀପୁଅ ପାଖକୁ ବୋତଲରେ ବୋତଲେ ଘିଅ, ବାରପନ୍ଦର ରୁଟି ଆଉ ଡାଲରେ ଡାଲେ ଦୁଧ ପଠାଇଲା । ସେ ତା ଚାକରକୁ କହିଲା 'ତାଙ୍କୁ (ମନ୍ତ୍ରୀପୁଅକୁ) କହିବୁ, ଆଜି ପୂର୍ଣ୍ଣିମୀ ତିଥି, ବାରମାସରେ ବର୍ଷେ ହୁଏ, ଆଉ ସମୁଦ୍ରରେ ପାଣି ଉଚ୍ଛୁଳୁଛି ।"

ଏଇଆ କହିବାକୁ କହି ଝିଅ ମନ୍ତ୍ରୀପୁଅ ପାଖକୁ ଖବର ପଠାଇଲା ତା ଘରକୁ ଆସିବାକୁ । କିନ୍ତୁ ବାଟରେ ଯାଉ ଯାଉ ବୁଢ଼ା ଚାକରର ଶ୍ରେଷ୍ଠ ପୁଅ ଆସି ତାକୁ ଖାଇବାକୁ ମାଗିଲା । ସେଇଠୁ ଚାକର ନିଜ ବୋକାମିରେ ଯେଉଁ ଖାଇବା ନେଇଥିଲା ସେଥିରୁ ତା ଶ୍ରେଷ୍ଠପୁଅକୁ କିଛି ଦେଇଦେଲା । ତା'ପରେ ଆଉ ତକ ନେଇ ମନ୍ତ୍ରୀପୁଅକୁ ଦେଇ ବୁଢ଼ା ଝିଅ ଯାହା କହିଥିଲା ସେ କଥା କହିଲା ।

ମନ୍ତ୍ରୀପୁଅ ସେ କଥା ଶୁଣି ଚାକରକୁ କହିଲା, 'ଯା, ତୋ ମାଲିକିଆଣୀଙ୍କୁ ମୋର ନମସ୍କାର ଜଣାଇ କହିବୁ ଯେ ଆଜି ଅମାବାସ୍ୟା ତିଥି, ବର୍ଷକ ଏଗାରମାସ, ଆଉ ସମୁଦ୍ରରେ ପାଣି ଉଚ୍ଛୁଳି ନାହିଁ ।'

Digitized by srujanika@gmail.com

ଗୃହକର ବା ଏ କଥାର ମାନେ କ'ଣ ବୁଝିବ ! ସେ ଆସି ବୁଢ଼ା ଝିଅକୁ ସବୁ କହିଲା । ତା ଶୁଣି ଝିଅ ତା ଗୃହକର ଉପରେ ଭାରି ରାଗିଲା ଯେ ସେ କାହିଁକି ସେ ଖାଇବା ଜିନିଷରୁ ତା ପୁଅକୁ ଦେଇଥିଲା ।

କିଛି ସମୟପରେ ବୁଢ଼ାସାଙ୍ଗରେ ମନ୍ତ୍ରୀପୁଅ ଆସି ବୁଢ଼ାଘରେ ପହଞ୍ଚିଲା । ତାକୁ ବୁଢ଼ା ଚାଷୀ ଘରେ ସମସ୍ତେ ଭାରି ଖାତିର କଲେ । ସେ କିଏ ନ ଜାଣି ବି ସେମାନେ ତାକୁ ଭାରି ବଡ଼ଲୋକର ପୁଅ ବୋଲି ଭାବୁଥାନ୍ତି । ତାପରେ ସେ ସବୁ କଥା ଖୋଲିକରି କହିଲା । ତା ନିଜ ପରିଚୟ ଦେଇ ଦେଶ ବୁଲିବାପାଇଁ ଆସିବାର କାରଣ ଜଣାଇଲା । କେମିତି ମାଛ ହସିଲା, ପୁଣି ରାଜା, ମାଛ କାହିଁକି ହସିଲା ତା କାରଣ ଖୋଜିବାକୁ ମନ୍ତ୍ରୀଙ୍କୁ ଆଦେଶ ଦେଲେ କେମିତି ମନ୍ତ୍ରୀ ମରିବାପାଇଁ ପ୍ରସ୍ତୁତ ହୋଇ ତାକୁ ବାହାରକୁ ବୁଲିବାକୁ ପଠାଇଲେ, ସବୁ କଥା ସେ ବୁଢ଼ା ଝିଅକୁ କହିଲା ।

ବୁଢ଼ାର ଝିଅ ସବୁ ଶୁଣି କହିଲା, 'ମାଛଟାଏ ହସିଲା ! ଆଉ ମାଛର ହସ ଏ ସବୁ ଗୋଳମାଳର କାରଣ । ଏଥିରୁ ମୋତେ ଜଣା ଯାଉଛି ନିଶ୍ଚୟ ରାଜପ୍ରାସାଦରେ ଜଣେ କିଏ ଲୁଚିକରି ରହିଛି ରାଜାଙ୍କୁ ମାରିବା ପାଇଁ ।'

ତା କଥା ଶୁଣି ମନ୍ତ୍ରୀପୁଅ ଆନନ୍ଦରେ ନାଚିଗଲା । ସେ କହିଲା, 'ବର୍ତ୍ତମାନ ବି ବେଳ ଅଛି ମୋ ବାପାଙ୍କୁ ବଞ୍ଚେଇବା ପାଇଁ; ଆଉ ରାଜାଙ୍କୁ ବି ରକ୍ଷା କରିବା ପାଇଁ ।'

ଏଇଆ କହି ସେ ସେଦିନ ବୁଢ଼ା ଚାଷୀର ଝିଅକୁ ସାଙ୍ଗରେ ନେଇଆସି ନିଜ ରାଜ୍ୟରେ ପହଞ୍ଚିଲା । ରାଜ୍ୟରେ ପହଞ୍ଚି ତା ବାପା

Digitized by srujanika@gmail.com

ପାଖକୁ ଯାଇ ସବୁ କଥା କହିଲା । ମନ୍ତ୍ରୀ ସାଙ୍ଗେ ସାଙ୍ଗେ ଯାଇ ରାଜାଙ୍କୁ କହିଲେ ।

ରାଜା ତା ଶୁଣି କହିଲେ, 'ବାଜେ କଥା । ଅସମ୍ଭବ, ମୋତେ ପୁଣି ମୋର ଘରେ ରହି କିଏ ମାରିବ ?'

ମନ୍ତ୍ରୀ କହିଲେ, ମହାରାଜ ! ଠିକିଏ ଖୋଜକରି ଦେଖନ୍ତୁ ପ୍ରକୃତରେ କିଏ ଲୁଚିକରି ଆପଣଙ୍କ ପ୍ରାସାଦ ଭିତରେ ଅଛି କି ନାହିଁ । ପ୍ରାସାଦର ସବୁ ଚାକରାଣୀଙ୍କୁ ପରୀକ୍ଷା କରି ଦେଖନ୍ତୁ ।'

ସେଇଠୁ ରାଜା ସେଇଆ କରିବାକୁ ଠିକ୍ କଲେ । ସେ ରାଜ-ପ୍ରାସାଦରେ ଯେତେ ଚାକରାଣୀ ଥିଲେ ସମସ୍ତଙ୍କୁ ଡାକି ଗୋଟାଏ ମସ୍ତବଡ଼ ଗାତଖୋଳି ତା' ଉପରେ ଏପଟରୁ ସେ ପଟକୁ ଡେଇଁବାକୁ ଆଦେଶ ଦେଲେ । ସମସ୍ତେ ଗାତ ଡେଇଁବାକୁ ଚେଷ୍ଟାକଲେ । କିନ୍ତୁ କେହି ପାରିଲେ ନାହିଁ । କେବଳ ଜଣେ ଡେଇଁ ପଡ଼ିଲା । ଦେଖିଲା ବେଳକୁ ସେ ଜଣକ ଜଣେ ଧୂର୍ତ୍ତ ଲୋକ । ରାଜା ସେ ଲୋକର ମୁଣ୍ଡକାଟ ଆଦେଶ ଦେଲେ । ରାଣୀଙ୍କ ମନ ଶାନ୍ତ ହେଲା ଆଉ ମନ୍ତ୍ରୀ ବି ମୁଣ୍ଡକାଟରୁ ରକ୍ଷା ପାଇଲେ ।

ମନ୍ତ୍ରୀପୁଅ, ବୁଢ଼ାରାକ୍ଷସୀର ଝିଅକୁ ବାହାହୋଇ ସୁଖରେ ରହିଲା ।



Digitized by srujanika@gmail.com

